# ଶାରବ୍ୟ

( ଗଳ୍ପ ସଞ୍ଚୟନ )



ଲେଖକ

ଅଧ୍ୟାପକ ଅସିତ କର, ଏମ୍. ଏ.



ପ୍ରଥମ ସଂସ୍କରଣ ୧୦୦୦

ଏପ୍ରିଲ, ୧୯୬୦



ପ୍ରାପ୍ତିସ୍ଥାନ :-

ଶ୍ରୀ ମହେଶ୍ୱର କର,

ସରାଇକେଲା,

ସିଂହଭୂମ



ମୂଲ୍ୟ ଟ ୧। ବନ୍ଧାଇ ଟ ୧।୵

Digitized by srujanika@gmail.com

## — ଉତ୍ସର୍ଗ —

ଓଡ଼ିଶାର ବିଶିଷ୍ଟ ଗବେଷକ ଓ ସାହିତ୍ୟିକ

ଡ଼କ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଏମ୍. ଏ. ପି. ଏଚ୍. ଡ଼ି (ଲଣ୍ଡନ) ଙ୍କ

କରକମଳରେ ଶ୍ରଦ୍ଧା ଓ ଭକ୍ତିର

ନିଦର୍ଶନ ସ୍ୱରୂପ...

ଲେଖକ

Digitized by srujanika@gmail.com

"Not for the proud man apart
From the raging moon I write
On these spindrift pages
Nor for the towering dead
With their nightingales and psalms
But for the lovers, their arms
Round the grief's of the ages,
Who pay no praise or wages
Nor heed my craft or art."

—Dylan Thomas

Digitized by srujanika@gmail.com

# ଟିକିଏ କହି ରଖେ............

'ଶରବ୍ୟ' ମୋର ପ୍ରଥମ ଗଳ୍ପ ସଞ୍ଚୟନ--

କବିତା ଓ ପ୍ରବନ୍ଧ ଲେଖାରୁ ମୋର କବି ଓ ଲେଖକ ଜୀବନର ସୂତ୍ରପାତ — ଗଳ୍ପ ଲେଖିଲି ବହୁପରେ...ହଁ, ଏବେବି ମୋର ମନେ ଅଛି — ୧୯୬୨ ମସିହାରେ ମୋର ପ୍ରଥମ ଗଳ୍ପ "ବିପ୍ଳବୀର ସ୍ୱପ୍ନ" ପ୍ରକାଶ ପାଇଥିଲା । ସେତେବେଳେ ମୁଁ ଥିଲି ସର୍ଭେକଲାର ଜଣେ ଯୁବ ନେତା । ମୋ ରାଜନୈତିକ ଜୀବନର ଏକ ଅଭୁଲା ପର୍ଯ୍ୟାୟ ଉକ୍ତ ଗଳ୍ପଟିର ପ୍ରାଣକେନ୍ଦ୍ର ।

ତା'ପରେ ବହୁଦିନ ଗଡ଼ିଗଲା —

ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ଧାରାବାହିକ ଭାବରେ ପ୍ରବନ୍ଧ ଓ କବିତା ଲେଖୁଥିଲି; କିନ୍ତୁ ସେହି ଗୋଟିଏ ଗଳ୍ପ ଲେଖା ପରେ ସତେ ଯେପରି ଗଳ୍ପ ଲେଖାରେ ପୂର୍ଣ୍ଣଚ୍ଛେଦ ପଡ଼ି ଯାଇଥିଲା । ହଠାତ୍ ଦିନେ ଆକସ୍ମିକ ଭାବରେ ପୁଣି ଚକ ଘୂରିଗଲା.. ମୋର ପରମ ହିତୈଷୀ ସବିତା ସେଇ 'ବିପ୍ଳବୀର ସ୍ୱପ୍ନ' ଗଳ୍ପଟି ପଢ଼ି ଗଳ୍ପ ଲେଖିବାକୁ ମୋତେ ବାଧ କଲେ । ତାଙ୍କ ସସ୍ନେହ ଅନୁରୋଧ ମୁଁ ଏଡ଼ି ପାରିଲିନି...ଗଳ୍ପ ଲେଖାରେ ପୁଣି ହାତ ଦେଲି ଓଡ଼ିଶାର ସାହିତ୍ୟ ପ୍ରେମୀ ଜନସାଧାରଣଙ୍କର ମୋ ଗଳ୍ପ ପ୍ରତି ଆଦର ମୋତେ ଯଥେଷ୍ଟ ଉତ୍ସାହିତ କଲା । ପ୍ରଜାତନ୍ତ୍ର ପ୍ରଚାର ସମିତି ଗାଳ୍ପିକ ଭାବରେ 'ବିଷୁବ ମିଳନ'ରେ ମୋତେ ପୁରସ୍କୃତ କରି ମୋର ଆତ୍ମପ୍ରତ୍ୟୟକୁ ଦୃଢ଼ୀଭୂତ କରିଥିଲେ । ତେଣୁ ଏହି ସାଂସ୍କୃତିକ ଅନୁଷ୍ଠାନ ନିକଟରେ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

ଏଇ ସଞ୍ଚୟନରେ ସନ୍ନିବେଶିତ ଗଳ୍ପଗୁଡ଼ିକ ମଧ୍ୟରୁ "ସ୍ମାରକୀ" ବ୍ୟତୀତ ଅନ୍ୟ ସମସ୍ତ ଗଳ୍ପ ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇ ଆଦୃତ ହୋଇଥିଲା । 'ପ୍ଲାଟଫର୍ମ ନମ୍ବର ୪' ଗଳ୍ପଟି ପଞ୍ଜାବର 'ସପ୍ତସିନ୍ଧୁ' ପତ୍ରିକାରେ ଶ୍ରୀ ସତ୍ୟଭୂଷଣ ବର୍ମାଙ୍କ ଦ୍ୱାରା

Digitized by srujanika@gmail.com

ଅନୁଦିତ ହୋଇ ପ୍ରକାଶିତ ହୋଇଥିଲା । ଏତତ୍ ବ୍ୟତୀତ ସାହିତ୍ୟ ସାଧନା ପଥରେ ମୋର ଉତ୍ସାହଦାତା ବନ୍ଧୁ ଅଧ୍ୟାପକ ହଳଧର ପଣ୍ଡା 'ଶରବ୍ୟ' ଗଳ୍ପଟି ଇଂରେଜୀରେ ଅନୁବାଦ କରିଥିଲେ । ଉଭୟ ଶ୍ରୀ ବର୍ମା ଓ ଶ୍ରୀ ପଣ୍ଡା ମୋର ଧନ୍ୟବାଦାର୍ହ ।

ପୁସ୍ତକ ପ୍ରକାଶ କାଳରେ ଛଉନୃତ୍ୟଶିଳ୍ପୀ ଶ୍ରୀ ମହେଶ୍ୱର ନନ୍ଦ ଓ ବନ୍ଧୁ ଶ୍ରୀ ପ୍ରଫୁଲ୍ଲ କୁମାର ମିଶ୍ରଙ୍କ ସହଯୋଗ ଓ ସହାନୁଭୂତିମୂଳକ କାର୍ଯ୍ୟାନୁଷ୍ଠାନ ତଥା ଶ୍ରୀ ଭାଗବତ ନନ୍ଦ, ଅଧ୍ୟାପକ ବାସୁଦେବ ନନ୍ଦ, ଶ୍ରୀ ଦୟାସାଗର ପଣ୍ଡା, ଅଧ୍ୟାପକ ଶ୍ରୀ ନାରାୟଣଚନ୍ଦ୍ର ନାୟକ, ଶ୍ରୀ ଶରତ୍ ଚନ୍ଦ୍ର ତ୍ରିପାଠୀ, ଶ୍ରୀ ରାସବିହାରୀ ମିଶ୍ର' ନରୋତ୍ତମ ସାହୁ, ଗିରିଜାଭୂଷଣ ପଟ୍ଟନାୟକ, *Mr. J. N. Kumar* ଓ ପଲିଟେକନିକ୍ ସାଏନ୍ସ ଅଧ୍ୟାପକ ଶ୍ରୀ ପି. କେ. ରଥ ଙ୍କ ଉତ୍ସାହ ପ୍ରଦାନ ଜୀବନର ଚଲାପଥରେ ଅବିସ୍ମରଣୀୟ ହୋଇ ରହିଥିବ ।

ପୁସ୍ତକଟି ଶୀଘ୍ର ମୁଦ୍ରଣ ରୂପ ଦେଖିବା ପାଇଁ ମୋର ଶ୍ରଦ୍ଧେୟ ଗୁରୁ ସର୍ବଶ୍ରୀ ରାଜେନ୍ଦ୍ର ପ୍ରସାଦ ପଣ୍ଡା, ତ୍ରିବିକ୍ରମ ତ୍ରିପାଠୀ ଓ ନଳିନୀ ରଞ୍ଜନ ପଟ୍ଟନାୟକଙ୍କ ଉତ୍କଣ୍ଠା ମୁଁ ଭୁଲି ପାରିବିନି । ସେମାନଙ୍କ ପାଇଁ ଚିରଦିନ ମୋ-ଅନ୍ତରର ନିଭୃତତମ ପ୍ରଦେଶରୁ ଶ୍ରଦ୍ଧା ଓ ସ୍ନେହର ଝରଣା ଝରୁଥିବ ।

ମୁଦିପଡ଼ା,
ସମ୍ବଲପୁର
ତା ୨୨ - ୪ - ୭୦

ବିନୟାବନତ
ଅସିତ କବି

Digitized by srujanika@gmail.com

# ସଂଘମିତ୍ରା

ସଂଘମିତ୍ରା ଗଭୀର ନିଦରେ ଶୋଇଛି···

କଳିଙ୍ଗ ବିଜେତା ଚଣ୍ଡାଶୋକଙ୍କ କନ୍ୟା ସଂଘମିତ୍ରା ନୁହେଁ, ଐଦର୍ଭର ପ୍ରବଳ ପରାକ୍ରମୀ ସେନାପତି ମେଘବାହନଙ୍କ ଅଲିଅଳି କନ୍ୟା ସଂଘମିତ୍ରା ସେ । ତପ୍ତକାଞ୍ଚନ ଅବୟବର ସାମଗ୍ରିକ ଜୁଆର ଭିଡ଼ରେ ପର୍ବତ ଗୁମ୍ଫାର ଜଡ଼ ପ୍ରସ୍ତର ଖଣ୍ଡ ଜୀବନ ପାଇ ଉଠୁଥିଲା । ଚୈତ୍ର ପ୍ରଦୀପର ଶିଖା ପରି ସଂଘମିତ୍ରାର ନରମ ଅଧର ମଝିରେ ମଝିରେ ଥରି ଉଠୁଥିଲା । ଲପନରେ ତାର ଅସ୍ତରାଗର କାରୁଣ୍ୟ···

ସଂଘମିତ୍ରା କଡ଼ ଲେଉଟାଇଲା । ମୁଖରୁ ତା'ର ଉଚ୍ଛୁଳି ପଡ଼ିଲା ସ୍ୱପ୍ନର କଥୋପକଥନର ଅସ୍ପଷ୍ଟ କେଇପଦ । ଅରଣ୍ୟାନି ବକ୍ଷରେ ତୀବ୍ର ପବନର ମର୍ମର ପରି ଗୋଟିଏ ଗୁରୁଗମ୍ଭୀର ଦୀର୍ଘଶ୍ୱାସ ହୃଦୟର ପ୍ରତ୍ୟେକ ପଞ୍ଜରାକୁ ତାର ଦୋହଲାଇ ଦେଲା ସତେ ଯେପରି ସଙ୍ଗେ ସଙ୍ଗେ ଆଖିରୁ ଦୁ'ଟୋପା ତରଳ ମୁକ୍ତା ଝରି ପଡ଼ି କର୍ପୂରିତ ଦୀପାଲୋକରେ ଚକ୍ ଚକ୍ କରି ଉଠିଲା । ବାହାରେ ଗରଜି ଉଠିଲା ଶ୍ରାବଣର ଧ୍ୱଂସ ବାଦଲ···

ସଂଘମିତ୍ରାର ନିଦ ଭାଙ୍ଗିଗଲା ।

ସ୍ୱପ୍ନର ଅବ୍ୟକ୍ତ ବେଦନାକୁ ବୁକୁରେ ଚାପି ଧରି ଉଠିଲା ସେ । ଆଖିରୁ ଲୁହର ଧାର ତାର ଲିଭି ନ ଥିଲା । ତୈଳ ଦୀପ ତଳେ ସଙ୍କୁଚିତ

Digitized by srujanika@gmail.com

ଘୁମ୍ପା ଥର ଥର ଉଠୁଥିଲା । ଧରାର ବୁକୁରେ ସନ୍ଧ୍ୟା ନଇଁ ଆସିବା ସଙ୍ଗେ ସଙ୍ଗେ ଦୂର ନୀଳ ଆକାଶରେ ଗୋଟି ଗୋଟି କରି ତାରା ଫୁଲ ଫୁଟି ଉଠିବା ପରି ସଂଘମିତ୍ରାର ମନର ପର୍ଦ୍ଦାରେ ଅତୀତର ପୁଞ୍ଜିଭୂତ ସ୍ମୃତି ଗୋଟି ଗୋଟି କରି ଫୁଟି ଉଠିଲା । ଗୁମ୍ଫା ଭିତରେ ସୁରକ୍ଷିତ ତାମ୍ର ପାତ୍ରଟି ସ୍ୱହସ୍ତରେ ଧରିଲେ ସେ । ଜୀବନର ସେ କେଉଁ ଅବୁଝା ମୁହୂର୍ତ୍ତର ବିକଳ ଧ୍ୱନି ସ୍ମୃତି ବିକ୍ଷୋଭିତ ମନରେ ତା'ର ବାରମ୍ବାର ପ୍ରତିଧ୍ୱନିତ ହେଉଥିଲା । ମୃଦୁ କମ୍ପିତ ଚମ୍ପକ ଅଙ୍ଗୁଳି ଗୁଡ଼ିକ ଶୂନ୍ୟ ତାମ୍ର ପାତ୍ର ଉପରେ ବାରମ୍ବାର ଚାଳନା କରି ସତେ ଯେପରି କେତେ କ'ଣ ଖୋଜୁଥିଲା ସେ ତାରି ଭିତରୁ...

× × ×

ବିଦର୍ଭର ବିଳାସୀ ରାଜା ଶତ୍ରୁଘ୍ନ । ସୁରା ଓ ସାକୀର ଆରାଧନାରେ ରାଜକୋଷକୁ ନିଃଶେଷ କଲେ ସେ । ମଦ୍ୟପ ରାଜାର ବିଳାସର ଉପାଦାନ ଯୋଗାଇବା ପାଇଁ କର ଭାରରେ ଉତ୍ପୀଡ଼ିତ ହେଲେ ବିଦର୍ଭର ରାଜଭକ୍ତ ପ୍ରଜାବୃନ୍ଦ । ଅଭାବ ଓ ଅନାଟନର ବହ୍ନିଶିଖାରେ ବିଦର୍ଭର ଜନସାଧାରଣ ବ୍ୟତିବ୍ୟସ୍ତ ହେଲେ...ଆଉ ଠିକ୍ ସେତିକିବେଳକୁ ସୁଯୋଗ ପାଇ ପଡ଼ୋଶୀ ରାଜ୍ୟମାନେ ସୀମାନ୍ତରେ ଲୁଣ୍ଠନ ଆରମ୍ଭ କଲେ । ତଥାପି, ତଥାପି ଶତ୍ରୁଘ୍ନ ରଙ୍ଗୀନ ନିଶାରେ ମସଗୁଲ । ସୀମାନ୍ତରେ ଆକ୍ରମଣ ଚାଲିଥିବା ବେଳେ ରାଜପ୍ରାସାଦର ପ୍ରମୋଦ କକ୍ଷରେ ବାରାଙ୍ଗନାର ନୂପୁର-ନିକ୍ୱଣ କାମୁକ ରାଜାକୁ ଟାଣି ନେଇ ଯାଉଥିଲା କେଉଁ ଏକ ଘୁମନ୍ତ ସ୍ୱପ୍ନପୁରୀକୁ । ରାଜାକୁ ସଚେତନ କରିବାକୁ ଯାଇ ସେନାପତି ମେଘବାହନଙ୍କୁ ନିର୍ବାସିତ ହେବାକୁ ପଡ଼ିଲା ।

ଦେଶଭକ୍ତ ମେଘବାହନ ଆଉ ଅପେକ୍ଷା କରି ପାରିଲେନି । ଯୌବନର ଆଦ୍ୟ ଉଷାରୁ ଯେଉଁ ଜନ୍ମମାଟି ପାଇଁ ଜୀବନକୁ ସେ ପାଣି

Digitized by srujanika@gmail.com

ଛଡ଼ାଇ ଦେଇଛନ୍ତି ତାଙ୍କୁ ବଞ୍ଚି ଥାଉଁ ଥାଉଁ ଶତ୍ରୁର ହସ୍ତରେ ଅସହାୟ ଭାବରେ ଛାଡ଼ିଦେଇ ପାରିବେନି ସେ···

ପାଞ୍ଚଶତ ସୁଶିକ୍ଷିତ ସୈନ୍ୟ ସହିତ ସୀମାନ୍ତରେ ମେଘବାହାନ-ଙ୍କର ଶିବିର ଦେଖି ସୀମାନ୍ତବାସୀ ଆଶ୍ୱସ୍ତ ହେଲେ ।

ଦିନେ ଗଲା, ଦୁଇଦିନ ଗଲା, ତିନିଦିନ ଗଲା···

ଶତ୍ରୁର ଦେଖା ନାହିଁ । ତଥାପି ମେଘବାହନ ନିଶ୍ଚିନ୍ତ ହେଲେ ନାହିଁ ।

ଚତୁର୍ଥ ଦିବସ···

ରଜନୀର ଶେଷ ଯାମ । ବୃଦ୍ଧ ମେଘବାହନଙ୍କର ଆଖିରେ ତନ୍ଦ୍ରା ମାଡି ମାଡି ଆସୁଥାଏ । ଶିବିର ବାହାରେ ସଙ୍କେତ ଶୁଣି ତନ୍ଦ୍ରା ଭାଙ୍ଗିଗଲା । ନିଜକୁ ନିମିଷକ ମଧ୍ୟରେ ପ୍ରସ୍ତୁତ କରିନେଲେ ସେ । ଶିବିର ବାହାରକୁ ଡିଙ୍କିମାରି ତାଙ୍କ ମୁଖମଣ୍ଡଳ ଅସ୍ୱାଭାବିକ ଭାବରେ କଠିନ ହୋଇ ଉଠିଲା ।

ରଣ ନିପୁଣ ଅଭିଜ୍ଞ ମେଘବାହନଙ୍କର ଅନୁମାନ ମିଥ୍ୟା ହୋଇ ପାରେନା···

କଟୀର ତରବାରିକୁ କୋଷମୁକ୍ତ କଲେ ମେଘବାହନ । ଶିବିର ଭିତରେ ସତେ ଯେପରି ବିଦ୍ୟୁତ୍ ଖେଳିଗଲା । ପଶ୍ଚିମାଞ୍ଚଳରେ ବିଦ୍ରୋହ ଦମନ କରି ସୁଦୂର ଅତୀତରେ, ଯୌବନର ମଧୁର ପ୍ରଭାତରେ ସ୍ୱର୍ଗତ ମହାରାଜାଙ୍କ ଠାରୁ ଏହାକୁ ସେ ପୁରସ୍କାର ପାଇଥିଲେ ।

ବୃଦ୍ଧ ସେନାପତିଙ୍କ ଇଙ୍ଗିତ ମାତ୍ରେ ବିଦର୍ଭ ସେନା ଅପୂର୍ବ ରଣୋନ୍ମାଦରେ ମାତି ଉଠିଲେ । ଶତ୍ରୁ ସୈନ୍ୟ ଅଧିକ; କିନ୍ତୁ ମେଘ-ବାହନଙ୍କର ଅଦ୍ଭୁତ କୌଶଳ ନିକଟରେ ସେମାନଙ୍କର ସମସ୍ତ ପ୍ରୟାସ ବ୍ୟର୍ଥ ହେଲା ଗୋଟି ଗୋଟି କରି ବହୁ ଶତ୍ରୁ ସୈନ୍ୟ ଟଳି ପଡିଲେ ।

Digitized by srujanika@gmail.com

ଅବଶିଷ୍ଟ ପ୍ରାଣ ଉପୂରେ ଅଶ୍ୱ ଛୁଟାଇ ଅନ୍ଧକାର ଭିତରେ ଅଦୃଶ୍ୟ ହୋଇଗଲେ ।

ବର୍ବରଙ୍କ ଜୟ ହେଲା ।

ସେନାପତି ମେଘବାହନ ରକ୍ତରଞ୍ଜିତ ତରବାରି ଆଡ଼କୁ ଚାହିଁ ଖୁବ୍ ଜୋରରେ ହସି ଉଠିଲେ । ସେ ହସ ତୃପ୍ତିର...ସେ ହସ ଆତ୍ମବିଶ୍ୱାସର...

ବର୍ବରଙ୍କ ସୀମାନ୍ତରୁ ମେଘବାହାନଙ୍କ ଶିବିର ଉଠିଲା । କିନ୍ତୁ ସେନାପତି ମେଘବାହନ ଏକାବେଳକେ ନିଶ୍ଚିନ୍ତ ହେଲେ ନାହିଁ । ତେଣୁ ମଝିରେ ମଝିରେ ସାନ୍ଧ୍ୟ ସମୀରଣର ସାଇଁ ସାଇଁ ଶବ୍ଦ ସହିତ ସୀମାନ୍ତର ଅଣଓସାରିଆ ରାସ୍ତା ଉପରେ ଶୁଭେ ତାଙ୍କ କୃଷ୍ଣ ଅଶ୍ୱର ଟାପୁର ଆଘାତ...

ଦିନକର କଥା...

ବୃଦ୍ଧ ସେନାପତି ଅଶ୍ୱସଜ୍ଜା କରୁଥିଲେ । ପାଖକୁ ଆସିଲେ ତାଙ୍କର ଅଳ୍ପଅଳ କନ୍ୟା ସଂଘମିତ୍ରା । ମେଘବାହନଙ୍କୁ ତାଙ୍କ ସ୍ୱର୍ଗୀୟା ପ୍ରିୟତମାର ପ୍ରଥମ ଓ ଶେଷ ଉପହାର ଏହି ସଂଘମିତ୍ରାକୁ ଦେଖିଲେ ମେଘବାହନଙ୍କ ମନ କୋଣରେ ପ୍ରିୟତମାର ମଧୁର ସ୍ମୃତି ଜେଇଁ ଉଠେ । ସଂଘମିତ୍ରାର କୌଣସିଥିରେ ଯେପରି କଷ୍ଟ ନହୁଏ ସେଥିପାଇଁ ମେଘବାହନ ସବୁବେଳେ ସଚେତନ ଥାନ୍ତି ।

ନିକଟରେ ସଂଘମିତ୍ରାକୁ ଦେଖି ଅଧରରେ ସ୍ମିତ ହାସ୍ୟରେଖା ଉକୁଟାଇ କହିଲେ ମେଘବାହନ..."କଣ ମା"?

"ମୁଁ ଯିବି..."

"କୁଆଡେ?"

"ତୁମେ ଯୁଆଡେ ବାହାରିଛ"...

Digitized by srujanika@gmail.com

"ପାଗଳୀ, ସୀମାନ୍ତରେ ପ୍ରତିମୁହୂର୍ତ୍ତରେ ଆକ୍ରମଣର ଆଶଙ୍କା ରହିଛି ପରା..."

ପ୍ରିୟ ଅଶ୍ୱର ପୃଷ୍ଠରେ ସସ୍ନେହରେ ହାତ ବୁଲାଇଲେ ମେଘବାହନ ।

"ପ୍ରବଳ ପରାକ୍ରମୀ ଦୁର୍ଦ୍ଧର୍ଷ ସେନାପତିଙ୍କ କନ୍ୟାର ଭୟ କ'ଣ ବାବା ?"

ଅଶ୍ୱ ଉପରୁ ଦୃଷ୍ଟି ଫେରାଇ ସଂଘମିତ୍ରା ଆଡ଼କୁ ଚାହିଁଲେ ମେଘବାହନ.. ସଂଘମିତ୍ରାର ମୁଖମଣ୍ଡଳରେ ଆତ୍ମବିଶ୍ୱାସର ଦୃଢ଼ତା... ଅଳିଅଳ କନ୍ୟାର କୋମଳ ପ୍ରାଣରେ ଆଘାତ ଦେବାର ଇଚ୍ଛା ମେଘବାହନଙ୍କର ନ ଥିଲା ।

ପଶ୍ଚିମ ଆକାଶରେ ରକ୍ତଜବାର ଆଭା ..

ବାଳକାର ଚପଳତା ଯେମିତି କ୍ଷୁଦ୍ର ତଟିନୀର ତରଙ୍ଗ ନାଚି ନାଚି ଉଠୁଥିଲା । ଶୀତଳ ପବନରେ ଜୀବନର ଇଙ୍ଗିତ...ଅଶ୍ୱପୃଷ୍ଠରେ ପିତା ସମ୍ମୁଖରେ ବସି ସଂଘମିତ୍ରା ଚାହିଁ ରହିଥିଲା ପ୍ରକୃତିର ସ୍ୱଚ୍ଛ ଆଲେଖ୍ୟକୁ । ଆଉ ମେଘବାହାନ ? ସେହି ନିର୍ଝରିଣୀ, ସେହି ତମାଳ-ବନ, ସେହି ଦିଗନ୍ତ ବିସ୍ତାରିତ ସବୁଜ ପ୍ରାନ୍ତର ଅତୀତର କବର ଖୋଳି ତାଙ୍କ ଆଖି ଆଗରେ ଗୋଟି ଗୋଟି କରି କେତେ ଶାନ୍ତିକାନ୍ତ ସ୍ମୃତି ସତେ ଯେମିତି ଦେଖାଇ ଦେଉଥିଲା...ଧୀରେ...ଅତି ଧୀରେ ।

ସନ୍ଧ୍ୟା ନଇଁ ଆସିଲା ।

ଉତ୍ତର ପଶ୍ଚିମ ପଟର କ୍ଷୀଣ ବାଦଲ ମାୟାବୀ ରାକ୍ଷସ ପରି କାୟା ବିସ୍ତାର କରି ଆସୁଥିଲା । ହଠାତ୍ ସେ ଆଡ଼କୁ ଦୃଷ୍ଟି ପକାଇବା ମାତ୍ରେ ଚମକି ଉଠିଲେ ମେଘବାହନ ।

ଯାମିନୀର କଳା ପଣତ ଉଡ଼ି ଆସିଲାଣି । ସେ ଏବେବି ସେହି

Digitized by srujanika@gmail.com

ସୀମାନ୍ତର ବିଜନ ତଟିନୀ କୂଳେ···ଘରକୁ ଫେରି ଯିବାକୁ ବହୁତ ସମୟ ଲାଗିବ ।

କୃଷ୍ଣ ଅଶ୍ୱପୃଷ୍ଠରେ ଲାଲ ଚାବୁକ ଚମକି ଉଠିଲା···ଅଣଓସାରିଆ ଜଙ୍ଗଲ ପଥରେ ଖୁରା ଗୁଡ଼ାକ ତା'ର ନିମିଷକରେ ଉନ୍ମାଦ ହୋଇ ଉଠିଲା···

"ସଂଘମିତ୍ରା···"

"ବାବା ··"

"ଘରକୁ ଫେରିଯିବାକୁ ଚଞ୍ଚଳ ହୋଇ ପଡ଼ିଥିବୁ ନା ?"

"ନା ବାବା, ଏତେ ସୁନ୍ଦର ସ୍ଥାନ ଛାଡ଼ି ଯିବାକୁ ମନ ହେଉନି ।"

"ଉଃ ···ଉଃ···":

"ବାବା ! ! !"

"କହୁନା ମା···କହୁ ନା···"

ଅଶ୍ୱ ପୃଷ୍ଠରେ ପୁଣି ଚାବୁକ ଚମକି ଉଠିଲା···ବୈଶାଖୀ ଝଞ୍ଜାପରି କୃଷ୍ଣ ଅଶ୍ୱର ଗତି କ୍ଷିପ୍ରତର ହୋଇ ଉଠିଲା । କଳା ମିଚ ମିଚ ଅନ୍ଧକାର ଭିତରେ ପଥଭୁଲା ପବନ ଠାରୁ ଆହୁରି ଚଞ୍ଚଳ ହୋଇ ଉଠିଲା ସେ···

"ବାବା ··"

ଉତ୍ତର ନାହିଁ ।

"ବାବା !!!"

"ଭଗବାନ ··"

"କ'ଣ ହେଲା ବାବା ? ? ?"

"କହୁନା ମା···"

ଅଶ୍ୱର ଗତି ଆହୁରି ଆହୁରି ବଢ଼ି ଚାଲିଥିଲା । ସଂଘମିତ୍ରାର ମନରେ ଆଶଙ୍କାର ଅସରନ୍ତି ଢେଉ···ରଜନୀର କଜଳ କଳା ଅନ୍ଧକାର

Digitized by srujanika@gmail.com

ଭିତରେ ପିତାଙ୍କ ମୁହଁକୁ ଦେଖିବାର ବହୁ ପ୍ରୟାସ ତାର ବ୍ୟର୍ଥ ହୋଇଛି । ଆକାଶ ଗ୍ରହରେ ବାଦଲ ସେତେବେଳକୁ ବିସ୍ତାରିତ ହୋଇ ପଡ଼ୁଥିଲା···କଟି ମିଟି ଅନ୍ଧାର ଭିତରେ କୃଷ୍ଣ ଅଶ୍ୱ ନିଜକୁ ମିଶାଇ ଦେଉଥିଲା ସତେ ଯେପରି ।

ଦକ୍ଷିଣପୂର୍ବର ସମୁଚ୍ଚ ପର୍ବତମାଳା ନିକଟରୁ ନିକଟତର ହେଉଥିଲା···ଆଉ ସଂଘମିତ୍ରାର ହୃଦୟର ସ୍ପନ୍ଦନ ଦ୍ରୁତରୁ ଦ୍ରୁତତର ହେଉଥିଲା । ଖୁବ୍ ଜୋରରେ ଏତିକବେଳେ ବର୍ଷା ଆରମ୍ଭ ହେଲା··· ଧବଳ ବୁକୁରେ ମାୟାବୀ ବାଦଲ ଆରମ୍ଭ କଲା ପ୍ରଳୟର ତାଣ୍ଡବ···

ଅଶ୍ୱ ପୃଷ୍ଠରୁ ଟଳି ପଡ଼ିଲେ ମେଘବାହନ···

ସଂଘମିତ୍ରାର ଆର୍ତ୍ତନାଦ ମେଘର ତୀବ୍ର ଗର୍ଜନ ଭିତରେ ଲୁଚି-ଗଲା ସତେ ଯେପରି ।

ସୁଶିକ୍ଷିତ ଅଶ୍ୱର ଗତି ସ୍ଥିର ହୋଇଗଲା ।

ଅଶ୍ୱ ପୃଷ୍ଠରୁ ଓହ୍ଲାଇପଡ଼ି ଆତଙ୍କିତା ସଂଘମିତ୍ରା ତ୍ୱରିତ ପିତାଙ୍କ ପାଖକୁ ଗଲାବେଳେ ଖୁବ୍ ଜୋରରେ ବିଦ୍ୟୁତ୍ ଚମକି ଉଠିଲା··· ସେହି ବିଦ୍ୟୁତାଲୋକରେ ଭୂଲୁଣ୍ଠିତ ପିତାଙ୍କ ଆଡ଼କୁ ଚାହିଁ ଆର୍ତ୍ତ ଚିତ୍କାର କରି ମୂର୍ଚ୍ଛା ଗଲା ସଂଘମିତ୍ରା···

ମେଘବାହନଙ୍କ ପୃଷ୍ଠଦେଶ ଶରବିଦ୍ଧ ହୋଇଛି···

ସଂଘମିତ୍ରାର ଯେତେବେଳେ ଚେତନା ଫେରିଆସିଲା, ସେତେ-ବେଳେ ନିଜକୁ ଏକ ଅପରିଚିତ ଗୁମ୍ଫା ଭିତରେ ଶାୟିତା ଦେଖି ବିସ୍ମିତା ହେଲା ସେ । ଗତ ରାତିର କରୁଣ ସ୍ମୃତି ତା ଆଖି ଆଗରେ ଭାସି ଉଠିବା ସଙ୍ଗେ ସଙ୍ଗେ ଗୁମ୍ଫା ବାହାରୁ ଶୁଭିଲା ବୌଦ୍ଧ ଭିକ୍ଷୁର ଆତ୍ମ ନିବେଦନ···

Digitized by srujanika@gmail.com

"ବୁଦ୍ଧଂ ଶରଣଂ ଗଚ୍ଛାମି...
ସଂଘ ଶରଣଂ ଗଚ୍ଛାମି
ଧର୍ମଂ ଶରଣଂ ଗଚ୍ଛାମି...

ଗୁମ୍ଫା ଭିତରକୁ ପଶି ଆସିଲେ ସଦ୍ୟସ୍ନାତ ବୌଦ୍ଧ ଭିକ୍ଷୁ ଉତ୍ପଳ । ମୁଣ୍ଡିତ ମସ୍ତକ, ଆଜାନୁ ଲମ୍ବିତ ବାହୁ, ଦୀପ୍ତିମନ୍ତ କପାଳ ଉପରେ ବସ୍ତ୍ରସର ସୂକ୍ଷ୍ମ ସଙ୍କେତ...

ସାଶ୍ରୁ ନୟନରେ ଚାହିଁଲା ସଂଘମିତ୍ରା...

ଏଇ ତାହାହେଲେ ତା' ଜୀବନରକ୍ଷକ ?

"ମୋର ବାବା ପାଖକୁ ମୋତେ ନେଇଚାଲ ଦେବତା..."

ସଂଘମିତ୍ରା ଉତ୍ପଳଙ୍କ ଚରଣତଳେ ଲୋଟି ପଡ଼ିଲା । ଆଖି ଦୁଇଟିରୁ ତା'ର ଲୁହର ଝରଣା ଉଚ୍ଛୁଳି ପଡ଼ିଲା । ଧୀରେ ଧୀରେ ଭୂଲୁଣ୍ଠିତା ସଂଘମିତ୍ରାକୁ ସସ୍ନେହରେ ଉଠାଇ ଆଖିରୁ ତାର ଲୁହଧାର ପୋଛିଦେଲେ ଉତ୍ପଳ । ଆଶ୍ୱାସନା ପାଇ ସଂଘମିତ୍ରାର ଶୋକାବେଗ ଅଧିକତର ହେଲା । ଛୋଟ ଝିଅଟି ପରି ଫୁଲି ଫୁଲି କାନ୍ଦୁଥିଲା ସେ ଉତ୍ପଳଙ୍କ କୋଳରେ ମୁହଁ ଲୁଚାଇ ।

ଆଦରରେ ତାର ଅଲରା ଭ୍ରମରକୃଷ୍ଣ କେଶକୁ ସଜାଡ଼ି ଦେଉଁ ଦେଉଁ କହିଲେ ଉତ୍ପଳ –"ଏ ଦୁନିଆ ଏକ ବିରାଟ କର୍ମକ୍ଷେତ୍ର ମା... ସମସ୍ତେ ନିଜ ନିଜ କାମ ସାରି ଚାଲି ଯାଆନ୍ତି । କାଲି ବିଦର୍ଭର ସେନାପତି ଚାଲିଗଲେ, ଆଜି ହୁଏତ ସେପରି ଆଉ କେତେ ଚାଲି-ଯିବେ...ଦିନେ ସମସ୍ତେ ଏହିପରି ଚାଲିଯିବା । ମଣିଷ ବୁଝି ମଧ ଏକଥା ବୁଝିପାରେନା । ତେଣୁ ମା, ଜାଣିଶୁଣି ନିଜକୁ କଷ୍ଟ ଦିଏ ସେ...

ଉତ୍ପଳଙ୍କ ମୁଖମଣ୍ଡଳ ଦୀପ୍ତ ହୋଇ ଉଠିଲା ।

ଟିକଏ ରହି ପୁଣି କହିଲେ ସେ..."କାମନାର ଅସଂଯତ ପଥରେ ମଣିଷ ନିଜକୁ ଭୁଲିଯାଏ ମା । ସାମାନ୍ୟ ଏକ ବୁଦ୍ ବୁଦ୍ ପରି ନିମିଷ-

Digitized by srujanika@gmail.com

କରେ ତାର ଅଭ୍ୟୁଦୟ ଓ ଲୟ । ପୁଞ୍ଜିଭୂତ ଦୁଃଖ, ତାପ, କ୍ଳେଶରୁ ମୁକ୍ତିପାଇଁ ବୁଦ୍ଧ, ସଂଘ ଓ ଧର୍ମହିଁ ମଣିଷର ଏକମାତ୍ର ଆଶା ଓ ଭରସା । କାମନାର ବିନାଶ ଭିତରେହିଁ ନିର୍ବାଣ ପ୍ରାପ୍ତି ସମ୍ଭବ ମା । ସେଇଥିପାଇଁ ସେଦିନ ଭଗବାନ ବୁଦ୍ଧଦେବ ଖରା, ବର୍ଷା ଓ ଶୀତର ପୀଡ଼ନକୁ ବେଖାତିର କରି ଅଜ୍ଞତା ପୀଡ଼ିତ ସୃଷ୍ଟିରେ ଅମୃତ ଢାଳିବା ପାଇଁ ଭାରତର ଗ୍ରାମେ ଗ୍ରାମେ ଘୁରି ବୁଲିଥିଲେ ।

ଯାଦୁକର ବର୍ଣ୍ଣକୁ ଆତ୍ମବିସ୍ମୃତ ଭିକ୍ଷୁଣୀ ଉତ୍ପଳ ସଂଘମିତ୍ରାର ଆଖି ଆଗରୁ ଦୁନିଆର ମାୟାଜାଲ ଛିନ୍ନ କରି ପକାଇଲେ । ଜୀବନର ନଶ୍ୱରତାର ଏକ ନଗ୍ନ ଚିତ୍ର ସବୁବେଳେ ସଂଘମିତ୍ରାର ଆଖି ଆଗରେ ଭାସି ଉଠିଲା…ରାଜଦୂତର ଶତ ଅନୁନୟକୁ ଉପେକ୍ଷା କରି ଉତ୍ପଳଙ୍କ ଗୁମ୍ଫା ଭିତରେ ଆଶ୍ରୟ ନେଲା ସେ, ସବୁଦିନ ପାଇଁ । ପ୍ରତି-ଦିନ ପ୍ରାତଃକାଳରୁ ଉତ୍ପଳ ଚାଲିଯାଆନ୍ତି । ଫେରିବାବେଳକୁ ପଶ୍ଚିମ ଆକାଶ ପାଟଳ ହୋଇ ଉଠିଥାଏ । ଗୁମ୍ଫା ଭିତରେ ଏକାକିନୀ ସଂଘ-ମିତ୍ରା ପ୍ରଭୁ ବୁଦ୍ଧଙ୍କର ଆରାଧନା ଭିତରେ ନିଜର ଦୁଃଖକୁ ଭୁଲିଯାଏ…

ଦିନେ…

ବେଳ ସେତେବେଳକୁ ଦି ଘଡ଼ି ହେବ । ଗୁମ୍ଫା ଭିତରକୁ ପରିଷ୍କାର କରୁଥିଲା ସଂଘମିତ୍ରା । ବାହାରୁ ଶୁଭିଲା ବୌଦ୍ଧ ଭିକ୍ଷୁର କଣ୍ଠ ସ୍ୱର…

"ବୁଦ୍ଧଂ ଶରଣଂ ଗଚ୍ଛାମି …"

ଗୁମ୍ଫାର ଏକ କୋଣରେ ଥିବା ତଣ୍ଡୁଳ ପାତ୍ରଟି ଧରି ଦ୍ୱାର ନିକଟକୁ ଗଲା ସଂଘମିତ୍ରା । ପ୍ରତିଦିନ ଇମିତି ଅନେକ ଆସନ୍ତି । ସଂଘମିତ୍ରା ସବୁଦିନେ ବୌଦ୍ଧ ଭିକ୍ଷୁମାନଙ୍କର ପ୍ରସାରିତ ଭିକ୍ଷା ଥାଳରେ ତଣ୍ଡୁଳ ଢାଳି ଦିଏ…

Digitized by srujanika@gmail.com

ଦ୍ୱାର ସନ୍ନିକଟରେ ଛିଡ଼ା ହୋଇଥିଲେ ଏକ ତରୁଣ ଭିକ୍ଷୁ... ସୁଠାମ ବପୁ...ଉନ୍ନତ ମାଂସପେଶୀ, କମ୍ର ମୁଖମଣ୍ଡଳରେ ଅପରୂପ ଦୀପ୍ତି...ଭିକ୍ଷୁର ପ୍ରସାରିତ ଭିକ୍ଷାପାତ୍ରରେ ତଣ୍ଡୁଳ ମୁଠିକ ଢାଳିଦେଲା ସଂଘମିତ୍ରା...ତରୁଣ ଭିକ୍ଷୁର ଦୃଷ୍ଟି କ୍ଷଣିକ ପାଇଁ ସଂଘମିତ୍ରାର ଲପନ ଉପରେ ବୁଲିପଡ଼ି ନତ ହୋଇଗଲା ପୁଣି ପୂର୍ବପରି । ଶତ ସାଧନାର ଲୌହ ବେଷ୍ଟନୀ ଭିତରୁ ଆତ୍ମ ପ୍ରକାଶ ପାଇଁ ତରୁଣ ଭିକ୍ଷୁ ଚଞ୍ଚଳ ହୋଇ ଉଠିଲା ଯେପରି...ନିଜକୁ ସଞ୍ଜତ କରିନେଇ ଦିଗନ୍ତ ବିସ୍ତୃତ ପଥରେ ଆଗେଇଗଲା ସେ, ଦୂରକୁ, ବହୁ ଦୂରକୁ ।

ସେହି ଦିନଠାରୁ ନିତି ସେ ଆସେ, ସଂଘମିତ୍ରାର ହାତରୁ ମୁଠାଏ ତଣ୍ଡୁଳ ପାଇ ଥରୁଟିଏ ତା ଆଡ଼କୁ ଚାହିଁ ଚାଲିଯାଏ ସେହି ଏକ ପଥରେ ।

ଆଉ ଦିନେ...

ଉପଲ ସବୁଦିନ ପରି ବାହାରକୁ ଚାଲିଯାଇ ଥାଆନ୍ତି । ଗୁମ୍ଫା ଭିତରେ ଏକାକିନୀ ଥାଏ ସଂଘମିତ୍ରା । ସେହି ତରୁଣ ବୌଦ୍ଧ ଭିକ୍ଷୁ ସବୁଦିନ ପରି ଠିକ୍ ବେଳ ଦି ଘଡ଼ିରେ ଭିକ୍ଷା ଆଶାରେ ଆସିଛନ୍ତି ।... ସଂଘମିତ୍ରା ସେତେବେଳକୁ ପ୍ରଭୁ ବୁଦ୍ଧଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରୁଥାଏ ।

ପ୍ରଣାମ କରି ସାରି ଗୁମ୍ଫାର ଦ୍ୱାର ଆଡ଼କୁ ଚାହିଁ ବସିଗଲା ସେ । ସେହି ସୁଠାମ ତରୁଣ ଭିକ୍ଷୁ ଭିକ୍ଷା ଥାଳ ଧରି ଆଗେଇ ଆସୁଛନ୍ତି ତା'ରି ଆଡ଼କୁ...

"ଦେବୀ ..."

"ମୁଁ ଶମ୍ଭଣ ଶ୍ରେଷ୍ଠ ଉପଲଙ୍କ ଶିଷ୍ୟା ସଂଘମିତ୍ରା ।"

"କିନ୍ତୁ ମୋ ଆଖିରେ ତୁମେ ମଣିଷ ଜୀବନର ଏକ ରହସ୍ୟ..."

Digitized by srujanika@gmail.com

"ଶମ୍ମଣ...

"ଦେବୀ...

"ଏତେଦିନ ନିଜକୁ ବାସ୍ତବିକ ମୁଁ ଭୁଲି ଯାଇଥିଲି ଦେବୀ... କିନ୍ତୁ ତୁମେ ମୋତେ ନିଜକୁ ଚିହ୍ନିବାକୁ ସୁଯୋଗ ଦେଇଛ । ମୁଁ ବୁଝି-ପାରିଛି ନିର୍ବାଣ ଆଶାରେ ଏ ମସ୍ତକ ମୁଣ୍ଡନ ..ଏ ଭିକ୍ଷୁର ସାଜ.. ସବୁ ଆତ୍ମପ୍ରତାରଣା...

"ଶମ୍ମଣ...

ତରୁଣ ଭିକ୍ଷୁର କାନରେ ସତେ ଯେପରି ସେ ସ୍ୱର ଶୁଭିନାହିଁ । ତାର ପ୍ରଶସ୍ତ ବାହୁଦ୍ୱୟ ଆକୁଳ ଆବେଗରେ ସଙ୍ଘମିତ୍ରାକୁ ଆଲିଙ୍ଗନ କରିବାକୁ ଅଗ୍ରସର ହେଲା । ରକ୍ତରେ ତାଙ୍କର ସତେ ଯେପରି ନିଆଁ ଲାଗିଥିଲା ସେତେବେଳେ । କିଂକର୍ତ୍ତବ୍ୟବିମୂଢ଼ା ସଙ୍ଘମିତ୍ରା ଖୁବ୍ ଜୋରରେ ତରୁଣ ଭିକ୍ଷୁକୁ ଆଘାତ କଲା...ଅସଜ୍ଜିତ ଭିକ୍ଷୁ ମସୃଣ ପଥର ଚଟାଣ ଉପରେ ପଡ଼ିଗଲେ.. ଆଉ ଗୁମ୍ଫା ଭିତରର ଅନ୍ୟ ଏକ କକ୍ଷକୁ ଚଞ୍ଚଳ ପଦକ୍ଷେପରେ ଚାଲିଗଲେ ସଙ୍ଘମିତ୍ରା...

ବହୁକ୍ଷଣ ପରେ ଦ୍ୱିତୀୟ କକ୍ଷର ଦ୍ୱାରଦେଶରୁ ସଙ୍ଘମିତ୍ରା ଯେତେବେଳେ ପ୍ରଥମ କକ୍ଷର ଭିତରେ ତାହାର ସସ୍ପୃହ ଦୃଷ୍ଟି ବୁଲାଇ ଆଣିଲା, ସେତେବେଳକୁ ତରୁଣ ଭିକ୍ଷୁ ଗୁମ୍ଫାର କକ୍ଷ ଛାଡ଼ି ଚାଲି ଯାଇଥିଲେ । କମ୍ପିତ ପଦରେ ଧୀରେ ଧୀରେ ପ୍ରଥମ କକ୍ଷ ଭିତରକୁ ଆସିଲା ସେ । ତରୁଣ ଭିକ୍ଷୁ ଚାଲିଯାଇଛନ୍ତି, କିନ୍ତୁ ଛାଡ଼ି ଯାଇଛନ୍ତି ତାର ଶୂନ୍ୟ ତାମ୍ରପାତ୍ର.. ଗୁମ୍ଫାର ଦ୍ୱାର ସନ୍ନିକଟକୁ ଯିବାବେଳେ ତଳକୁ ଚାହିଁ ଚମକି ଉଠିଲା ସଂଘମିତ୍ରା...

କର୍କଶ ଗୁମ୍ଫାର କଜ୍ଜଳ କଳା ଛାତରେ କିଏ ଯେପରି ମଝିରେ ମଝିରେ ରକ୍ତ ଚନ୍ଦନ ପ୍ରଲେପ କରିଛି...

Digitized by srujanika@gmail.com

ସଂଘମିତ୍ରାର ବୁଝିବାକୁ ବାକି ରହିଲାନି ଯେ ତରୁଣ ଭିକ୍ଷୁର ମୁଣ୍ଡ ଫାଟି ରକ୍ତ ବୁନ୍ଦା ବୁନ୍ଦା ହୋଇ ଗୁମ୍ଫା ଭିତରେ ପଡ଼ୁଛି । ହୃଦୟର ଏକ ନିଭୃତ କୋଣ ହଠାତ୍ ତରୁଣ ଭିକ୍ଷୁ ପାଇଁ ସହାନୁଭୂତିରେ ପୂରି ଉଠିଲା । ବାଧାର ବନ୍ଧନ ଭିତରୁ ସେତେବେଳେ ତା'ର ଅଜାଣ-ତରେ ଚେଇଁ ଉଠିଥିଲା ତା'ର ନାରୀତ୍ୱ । ···ଆଖିରେ ତେଣୁ ତାର ଆଖିଏ ଲୁହ ।

ଧୀରେ ଧୀରେ ଗୁମ୍ଫାର ଦ୍ୱାର ନିକଟକୁ ଯାଇ ସାଶ୍ରୁ ନୟନରେ ଚାହିଁଲା ସେ, ସେହି ବିଗନ୍ତ ବିସ୍ତୃତ ରାସ୍ତାଆଡ଼କୁ···ଦୂର ଚିହିବାଲ ସତେ ଯେପରି ତାକୁ ଉପହାସ କରିଉଠିଲା···

ପ୍ରବଳ ଭୂମିକମ୍ପରେ ସ୍ରୋତସ୍ୱିନୀର ଗତିପଥ ହଠାତ୍ ପରିବର୍ତ୍ତିତ ହେଲାପରି ସଂଘମିତ୍ରାର ସବୁକିଛି ବଦଳି ଗଲା । କର୍ଣ୍ଣ କୁହରରେ ତାର ବାରମ୍ବାର ପ୍ରତିଧ୍ୱନିତ ହେବାକୁ ଲାଗିଲା ତରୁଣ ଭିକ୍ଷୁର କେଇ-ପଦ···"ନିର୍ବାଣ ଆଶାରେ ଏ ମସ୍ତକ ମୁଣ୍ଡନ, ଏ ଭିକ୍ଷୁର ସାଜ···ସବୁ ଆତ୍ମ ପ୍ରତାରଣା···"

ସଂଘମିତ୍ରା ତେବେ କଅଣ ଏତେଦିନ ନିଜକୁ ପ୍ରତାରିତ କରିଛି ???

ବାତବିକ୍ଷୋଭିତ ଜଳରାଶି ଉପରେ ଅସଂଖ୍ୟ ତରଙ୍ଗ ଖେଳି ଉଠିଲା ପରି ସଂଘମିତ୍ରାର ମନରେ ଖେଳି ବୁଲିଲା, ଅସଂଖ୍ୟ ପ୍ରଶ୍ନର ତରଙ୍ଗ···

ସେହି ଦିନଠାରୁ ପ୍ରତ୍ୟେକ ନିର୍ଜନ ମୁହୂର୍ତ୍ତରେ ବୁଦ୍ଧମୀର ସ୍ନିଗ୍ଧତା ଭିତରେ···ଗାଢ଼ ତମସା ଭିତରେ···ପୁଲକିତ ପବନର ଉଲ୍ଲସିତ ହିଲ୍ଲୋଳରେ···ବରଷାର ଝିମ ଝିମ ଲାସ୍ୟରେ ସଂଘମିତ୍ରା ସତେ ଯେପରି କାହାକୁ ଖୋଜିବୁଲେ ମନକୁ ମନ । ଉପଳ ବୌଦ୍ଧ ଭିକ୍ଷୁ ସମ୍ମିଳନୀରେ ଯୋଗ ଦେବା ପାଇଁ ପାଟଳିପୁତ୍ର ଯିବା ଦିନଠାରୁ

Digitized by srujanika@gmail.com

ବେଶି ଉଦାସୀ ହୋଇ ଉଠିଛୁ ସେ.........

ସ୍ୱପ୍ନର ବେଦନାକୁ ବୁକୁରେ ଚୁପି ଧରି ଶୂନ୍ୟ ଦୃଷ୍ଟି ପାହାଡ଼ ଭିତରେ ଅଙ୍ଗୁଳି ଚାଳନା କରି ଜୀବନ ଇତିହାସର ଛିନ୍ନ ପୃଷ୍ଠାର ଛବି ଗୁଡ଼ିକ ମାନସପଟରେ ଦେଖି ଚାଲିଥିଲା ସଂଘମିତ୍ରା...କାହାର ପରିଚିତ କଣ୍ଠସ୍ୱର ଭାସି ଆସିଲା । ଚଞ୍ଚଳ ପଦକ୍ଷେପରେ ଗୁମ୍ଫା ବାହାରକୁ ଚାଲିଆସିଲା ସେ...

ସେତେବେଳକୁ ସକାଳ ପାହି ଯାଇଛି...ବରଷା ଥମି ଯାଇଛି...

ଗୁମ୍ଫାର ଦ୍ୱାରରେ ଛିଡ଼ା ହୋଇଛନ୍ତି ଜଣେ ତରୁଣ ବୌଦ୍ଧ ଭିକ୍ଷୁ...ହାତରେ ଥାଳି –

ଭିକ୍ଷୁର ଉପରେ ଆଖି ପକାଇବା ମାତ୍ରେ ସଂଘମିତ୍ରାର ହୃଦ-ବୀଣାର ତାର ଗୁଡ଼ିକ ଅଜଣା ସୁରରେ ବାଜି ଉଠିଲା—

"ତୁମେ·! ! !"

"କଲ୍ୟାଣୀ...

"ମୁଁ ଅନୁତପ୍ତ ଭିକ୍ଷୁ...

"ଅନ୍ଧାର ଭିତରେ ତୁମେ ମୋତେ ନୂତନ ଆଲୋକର ସନ୍ଧାନ ଦେଇଛ ସଂଘମିତ୍ରା ।

"ଭିକ୍ଷୁ...

"କଲ୍ୟାଣୀ...

"ତୁମକୁ ଆଜି ତୁମର କାମ୍ୟ ଭିକ୍ଷା ଦେବାକୁ ମୁଁ ବ୍ୟାକୁଳ ହୋଇ ଉଠିଛି ଭିକ୍ଷୁ...ତୁମର ଚରଣ ତଳେ ନିଜକୁ ନୈବେଦ୍ୟ ଦେବାକୁ ମୋ ଭିତରର ଅବହେଳିତା ନାରୀ ଆଜି ଚଞ୍ଚଳ ହୋଇ-ଉଠିଛି...

"ନିଜକୁ ତୁମେ ଭୁଲିଯାଇଛ ସଂଘମିତ୍ରା...

"ଏତେ ଦିନ ନିଜକୁ ମୁଁ ବାସ୍ତବିକ ଭୁଲି ଯାଇଥିଲି ଭିକ୍ଷୁ...

Digitized by srujanika@gmail.com

କିନ୍ତୁ ତୁମେ ମୋତେ ନିଜକୁ ଚିହ୍ନିବାକୁ ସୁଯୋଗ ଦେଇଛ । ମୁଁ ବୁଝିପାରୁଛି ନିର୍ବାଣ ଆଶାରେ ଏ ମସ୍ତକ ମୁଣ୍ଡନ.. ଏ ଭିକ୍ଷୁର ସାଜ... ସବୁ ଆତ୍ମ ପ୍ରତାରଣା...

"ସଂଘମିତ୍ରା !..."

"ପ୍ରିୟତମ...

ପୁଣି ଏକ ନୂତନ ପରୀକ୍ଷା କଲ୍ୟାଣୀ.. ସାଧନା ପଥରେ ମୋର ଗାଢ଼ ଅନ୍ଧକାର ନେଇଁ ଆସୁଛ...ନା, ନା...।" ବୌଦ୍ଧ ଭିକ୍ଷୁ ଚଞ୍ଚଳ ହୋଇ ଉଠିଲେ—

"ପ୍ରିୟତମ...

ତରୁଣ ବୌଦ୍ଧ ଭିକ୍ଷୁର କାନରେ ସତେ ଯେପରି ସେ ଡ଼ାକ ପଶି ପାରୁନାହିଁ...ପାଦ ବଢ଼ାଇ ଚାଲିଲେ ସେ ଆଗକୁ ଆଗକୁ..

"ଫେରିଆସ, ଫେରିଆସ ପ୍ରିୟତମ..."

ଆକୁଳ ଆବେଗରେ କାନ୍ଦି ଉଠିଲ ସଂଘମିତ୍ରା । ଅଦୂରରୁ ଭାସି ଆସୁଥିଲା ତରୁଣ ବୌଦ୍ଧ ଭିକ୍ଷୁର ଆତ୍ମନିବେଦନ...

"ବୁଦ୍ଧଂ ଶରଣଂ ଗଚ୍ଛାମି...

ସଂଘମିତ୍ରା ହୃଦ-ବୀଣାର ତାର ଗୁଡିକ କରୁଣ ବିଳାପ କରି ଟୁକୁରା ଟୁକୁରା ହୋଇ ଛିଡି ପଡୁଥିଲା...



Digitized by srujanika@gmail.com

# ସ୍ୱାକ୍ଷର

କେଉଁ ଏକ ଶରବଦ୍ଧ ଅଭିଶପ୍ତର ବକ୍ଷ ରକ୍ତରେ ପଶ୍ଚିମାକାଶ ଲାଲ ହୋଇ ଉଠିଛି···ପାହାଡ଼ ବୁକୁରୁ କମ୍ପି କମ୍ପି ଝରି ପଡ଼ୁଛି କ୍ଷୁଦ୍ର ଝରଣାଟି । ଅଦୂରର ଶବର ପଲ୍ଲୀରୁ ଭାସି ଆସୁଛି ବଂଶୀର ଆହ୍ୱାନ··· ମରଣର ସାଗର ବେଳାରେ ଜୀବନର ରହସ୍ୟମୟ ଲୀଳା.. ଶିଳ୍ପୀ ଅପୂର୍ବର ମନତଳେ ଅସରନ୍ତି ଭାବର ଉଷ୍ମ

"ଅପୂର୍ବ ଭାଇ···ଅପୂର୍ବ ଭାଇନା···"

ଚମକି ଉଠି ଫେରି ଚାହିଁଲା ଅପୂର୍ବ···ଖିଲ ଖିଲ ହୋଇ ଉଠିଲା ଶବର ସର୍ଦ୍ଦାରର କନ୍ୟା ଚନ୍ଦ···ଗଭାରେ ଅନାବନା ଫୁଲ···ଗଳାରେ ବନ ଫୁଲର ମାଳ···

"ଚନ୍ଦ !!!"

"ପଥରକୁ ଜୀବନ ଦେବାକୁ ଯାଇ ନିଜକୁ ପଥର କରି ପକାଇଲ ଅପୂର୍ବ ଭାଇ···

"ନା, ରେ ଚନ୍ଦ, ଆଜି ରାତିରେ ମୋର ବ୍ରତ ଶେଷ ହେବ ପରା···

"ଆଜି ?"

"ହଁ ଚନ୍ଦ ଆଜି ! ସର୍ଦ୍ଦାରଙ୍କୁ ଲିପି ପଠାଇଛି । ପଥରର ପ୍ରତିମାରେ ଆଜି ରାତିର ଶେଷ ଭାଗରେ ଦେବି ମୋ ନିହାଣର ଶେଷ-

Digitized by srujanika@gmail.com

ଗାର । ସକାଳେ ଦେଖିବୁ ସେହି କ୍ଷୁଦ୍ର ସହକାର ବନର ଅସଂଖ୍ୟ କୃଷ୍ଣଶିଳା ମଣିଷ ପାଲଟି ଯାଇଛନ୍ତି...

"ହେଲେ, ତୁମ ବିନା ଅନୁମତିରେ ସେଠାକୁ ତ କେହି ଯାଇ ପାରିବେନି ଭାଇ...

"ତାହାହିଁ ସର୍ଦ୍ଦାରଙ୍କ ନିକଟରେ ଥିଲା ମୋର ଏକମାତ୍ର ପ୍ରାର୍ଥନା ତନି । ମୋର ବ୍ରତ ଶେଷ ନ ହେବା ଯାଏ..."

ଦୂରରୁ ଭାସି ଆସିଲା ଶବରବାଳାମାନଙ୍କର ସମ୍ମିଳିତ ଗୀତର ସ୍ୱର । ଗୀତରେ ଗୀତରେ ସେମାନେ ତନିକୁ ଡାକୁଥିଲେ ସେମାନେ । କ୍ଷଣିକ ପାଇଁ ଆନମନା ହେଲା ତନି । ନିଜକୁ ସମ୍ଭାଳି ନେଇ ଅପୂର୍ବ ଆଡ଼କୁ ଚାହିଁ ଗାଲରେ ତାର ଲକ୍ଷ ଗୋଲାପ ଫୁଟି ଉଠିଲା ।

"ସେମାନେ ମୋତେ ଡାକିଲେଣି, ହେଲେ ମୁଁ ଆଜି ଯିବିନି । ସବୁଦିନେ ତୁମେ ମୋତେ ଠକିଛ । ଆଜି ଗପ ନକହିଲେ ସତ କହୁଛି ଯିବିନି..."

"ଗପ !!!"

"ହୁଁ, ଖୁବ ଭଲ ଗପଟିଏ, ରଜାଝିଅ କଥା..."

"ରଜାଝିଅ !!!" ଅପୂର୍ବର ମନ ବୀଣାର ତାର ଗୁଡିକ ଝଣ କରି ବାଜି ଉଠିଲା ।

"ରଜାଝିଅ, ହିଁ ତନି ରଜାଝିଅ କଥା...କହୁଛି ଶୁଣ ତଳର କଥା । ଶୋଣିତପୁର ରାଜ୍ୟ । ରାଜା ସେଠାକାର ଭାରି ପ୍ରତାପଶାଳୀ । ଗାଁ ତାଙ୍କର ବଜ୍ରହସ୍ତ । ତାଙ୍କର ଗୋଟିଏ ବୋଲି ଝିଅ । ଆଦରରେ ତାକୁ ନା ଦେଇଥିଲେ ସେ ଶୁଭଶ୍ରୀ । ଦେଖିବାକୁ ଅତି ସୁନ୍ଦରୀ ସେ । ସଜଫୁଟା ମଲ୍ଲୀପରି ତାରକାନ୍ତି । ଉଆସ ଛାଡ଼ି ରାଜକନ୍ୟା କେବେ ବାହାରକୁ ଯାଆନ୍ତି ନାହିଁ । ଥରେ ସେ ରାଜ୍ୟରେ ଗୋଟିଏ ମେଳାର ଆୟୋଜନ ଚାଲିଥାଏ । ରାଜାର ବୋଇତ ସିଂହଳରୁ ଫେରୁଛି ବୋଲି

Digitized by srujanika@gmail.com

ଆସିଥାଏ ଦେଶ ବିଦେଶରୁ ବହୁ ଶିଳ୍ପୀ ମେଳାରେ ନିଜର କୃତିତ୍ୱ ଦେଖାଇବାକୁ ଆସିଥାନ୍ତି । ଜୋର ସୋରରେ ମେଳାର ପ୍ରସ୍ତୁତି ଚାଲିଥାଏ । ଦିନକର କଥା । ସେଦିନଟି' ଥିଲା ଆଜ ପର ଏକାଦଶୀ । ନାଗରା ବାଜି ଉଠିଲା…"ଜେମା ମେଳା ପ୍ରସ୍ତୁତି ଦେଖିବାକୁ ଆସିବେ ।" ଧୀରେ ଧୀରେ ଜନସ୍ରୋତ ସତେ ଯେପରି ଅଦୃଶ୍ୟ ହୋଇଗଲା । ମନ୍ତ୍ରୀର ଆଦେଶ — ପୁରୁଷ କେହି ରହିପାରିବେନି । ସମସ୍ତେ ଚାଲିଗଲେ, ଗଲା ନାହିଁ କେବଳ ଜଣେ ତରୁଣ ଶିଳ୍ପୀ । ପାଷାଣ ମୂର୍ତ୍ତିର ଆଖିରେ ନିହାଣର ଶେଷ ଘାର ଦେଇ ମୁଗ୍ଧ ନୟନରେ ଚାହିଁ ରହିଥିଲା ସେ ତାର ସୃଷ୍ଟିକୁ । ନାଗରା ତା କାନକୁ ଶୁଭିନି । ପଛରୁ କା'ର କର୍କଶ କଣ୍ଠସ୍ୱର ଶୁଣି ଚମକି ଉଠିଲା ସେ ।

"ତୁମେ ମହାମନ୍ତ୍ରୀର ଆଦେଶ ଅମାନ୍ୟ କରିଛ ଯୁବକ…

ବାତବିକ୍ଷୋଭିତ ଜଳରାଶି ପରି ଚୋଟିପଣ ଥରି ଉଠି ଚାହିଁଲା ଶିଳ୍ପୀ । ଗୋଟିଏ ବୟସ୍କା ନାରୀସହ ଜଣେ ଅନିନ୍ଦ୍ୟ ସୁନ୍ଦରୀ…ସାରା ଦେହରେ ଲାବଣ୍ୟର ଉର୍ମି…ସୃଷ୍ଟିର ଏକ ମଧୁର ରହସ୍ୟ ।

କମ୍ପିତ ହାତ ଦୁଇଟି କପାଳ ଉପରକୁ ଉଠାଇ ପ୍ରଣାମ କରି କହିଲା ଶିଳ୍ପୀ, "କ୍ଷମା କରିବେ ଆଜ୍ଞା, ମୁଁ କିଛି ଶୁଣିପାରିନି । ବୟସ୍କା ନାରୀଟି କଣ କହିବାକୁ ଯାଉଥିଲେ । ବାଧାଦେଇ ରୂପସୀ ତନ୍ୱୀ କହିଲେ, "ଶୁଣ ଶିଳ୍ପୀ ଭୟର କାରଣ କିଛି ନାହିଁ, ମୁଁ ରାଜଜେମା ଶୁଭଶ୍ରୀ । ତୁମକୁ ଅଭୟ ଦେଉଛି । ତୁମ ମୂର୍ତ୍ତିଟି ଦେଖି ମୁଁ ମୁଗ୍ଧ ହୋଇଛି" ତଳରୁ ମୁହଁ ଉଠାଇ ଚାହିଁଲା ଶିଳ୍ପୀ । ରାଜଜେମା ଶୁଭଶ୍ରୀ ଅନିମେଷ ନୟନରେ ତା ଆଡ଼କୁ ଚାହିଁଥିଲେ । ଚାରିଚକ୍ଷୁ ଏକ ହେବା ମାତ୍ରେ ତରୁଣ ଶିଳ୍ପୀର ସୁପ୍ତ ଶରୀରଟି କମ୍ପି ଉଠିଲା…କଣ ଭାବି କେଜାଣି ରାଜଜେମା ତାର ପାଖକୁ ଚାଲି ଆସିଲେ । ଶିଳ୍ପୀର ମନେ ହେଲା ସେ

Digitized by srujanika@gmail.com

ସ୍ୱପ୍ନ ଦେଖିଛୁ···

"କଅଣ ଭାବୁଛ ଶିଳ୍ପୀ ?"

"ମୋତେ କ୍ଷମା କରନ୍ତୁ ଜେମାମଣି···

"କିନ୍ତୁ ମୁଁ ତୁମକୁ ଦଣ୍ଡ ଦେବାକୁ ଚାହେଁ···

"ମୁଁ ପ୍ରସ୍ତୁତ ଅଛି ଜେମାମଣି···

"ତେବେ ଶୁଣ ଶିଳ୍ପୀ···ଆଜିଠାରୁ ଠିକ୍ ଏକମାସ ଭିତରେ ତୁମକୁ ମୋର ଏକ ମୂର୍ତ୍ତି ଗଢ଼ିଦେବାକୁ ପଡ଼ିବ । ଏଠାରୁ ୧୨ କୋଶ ଦୂରରେ ମୋର ଏକ ଗ୍ରୀଷ୍ମକାଳୀନ ପ୍ରମୋଦ ଉଦ୍ୟାନ ଅଛି । ପୁରୁଷର ଚକ୍ଷୁବର୍ଜ୍ଜିତ ସେଠି ଦେଖିବାକୁ ମିଳିବନି, ନାରୀ ପ୍ରହରୀ, ନାରୀ ସେବିକା ନାରୀପୁର ସେ । ସେଇଠିକୁ ତୁମକୁ ଯିବାକୁ ହେବ ।"

"କିନ୍ତୁ ମୁଁ ସେଠାକୁ ଯିବି କିମିତି ? ମହାରାଜ ଜାଣିପାରିଲେ···

"ନା, ନା କେହି ଜାଣିପାରିବେନି ଏଇ ନିଅ ମୋର ହୀରା ମୁଦି । ଏ ମୁଦି ଦେଖାଇଲେ କୌଣସି ଚିନ୍ତା କରିବାକୁ ପଡ଼ିବ ନାହିଁ ।" ତାପରେ ତରୁଣ ଶିଳ୍ପୀକୁ ବିସ୍ମିତ କରି ରାଜଜେମା ନିଜ ହାତରୁ ତାଙ୍କ ହୀରାମୁଦିଟି ତରୁଣ ଶିଳ୍ପୀର ହାତରେ ପିନ୍ଧାଇ ଦେଲେ । ତରୁଣ ଶିଳ୍ପୀର ହାତଟି ଥରି ଉଠିଲା । ମୁହଁରେ ପାତଳ ହସର ଝଲକ ଖେଳାଇ ମୁଗ୍ଧ ନୟନରେ ଶିଳ୍ପୀକୁ ଚାହିଁ ଚାଲିଗଲେ ରାଜଜେମା ଶୁଭଶ୍ରୀ । ଚଲା ପଥରେ ତାଙ୍କର ସତେ ଯେପରି ଫୁଟି ଉଠୁଥିଲା ଲକ୍ଷଶତ ରକ୍ତକମଳ । ଶିଳ୍ପୀର ମନେ ହେଲା ସେ ସତେ ଯେପରି ଏହି ଦୁଃଖତାପ-ଭରା ମାଟିର ଧରଣୀର ବହୁ ଦୂରରେ କେଉଁ ଏକ ସ୍ୱପ୍ନ ରାଜ୍ୟରେ ବିଚରଣ କରୁଛି ।

"ତାପରେ ଅପୂର୍ବ ଭାଇ ?"

"ତାପରେ···ତାପରେ ରାଜାର ବୋଇତ ଆସିଲା ଦିନ । ମେଳା ଦେଖିବାକୁ ଦେଶ ବିଦେଶରୁ ବହୁ ଲୋକ ଆସି ଜମିଥାନ୍ତି । ରାଜା ଶିଳ୍ପୀମାନଙ୍କୁ ବହୁ ପୁରସ୍କାର ଦେଲେ···

Digitized by srujanika@gmail.com

"ଆଉ ସେହି ତରୁଣ ଶିଳ୍ପୀ ?"

"ରଜା ନିଜ ଗଳାର ମୁକ୍ତା ମାଳାଟି ତରୁଣ ଶିଳ୍ପୀର ଗଳାରେ ପିନ୍ଧାଇ ଦେଇଥିଲେ । ଆଉ ସେତିକବେଳେ ଦ୍ୱିତଳ ପ୍ରାସାଦର ପର୍ଦ୍ଦା ତଳେ ଦୁଇଟି ଆଖି ଝଲସି ଉଠି ପୁଣି ଲୁଚି ଯାଇଥିଲା । ତାପରେ ଠିକ ସେହିଦିନ ରାତିରେ ଶିଳ୍ପୀ ଚାଲିଗଲା...ରାଜଜେମାର ଗ୍ରୀଷ୍ମକାଳୀନ ପ୍ରମୋଦ ଉଦ୍ୟାନର ଏକ ନିଭୃତ କୋଣରେ ସେ ସୃଷ୍ଟି ଯୋଗରେ ସତେ ଯେପରି ନିମଗ୍ନ ହେଲା । ରାତିର ଶେଷ ପ୍ରହରରେ ସୁଦ୍ଧା ସେହି-ଦିନ ଠାରୁ ପ୍ରମୋଦ ଉଦ୍ୟାନର ସଜାଗ ପ୍ରହରୀ ଶୁଣନ୍ତି ପାଷାଣ ବୁକୁରେ ନିହାଣରେ ଆଘାତର ଶବ୍ଦ—"ଠକ୍-ଠକ୍, ଠକ୍-ଠକ୍...। ତାପରେ ମାସଟିଏ ସରି ଆସିଲା । ସକାଳ ହେଲେ ଜେମା ଆସିବେ । ରାତିର ଶେଷ ଯାମ । ମୂର୍ତ୍ତିଟିରେ ଶେଷଥର ଦେଇ ନିହାଣ ଥୋଇ ଦେଇ ଚାହିଁଲା ଶିଳ୍ପୀ...ନିଜକୁ ଭୁଲିଗଲା ସେ । ମୂର୍ତ୍ତିଟିକୁ ଛାଡି ଚାଲି ଯାଇ ପାରିଲାନି । ଯେତେଥର ଚାହିଁଲା ତା ଆଖିର ପିପାସା ସେତିକି ବେଶି ବଢ଼ିଗଲା । ଧୀରେ ଧୀରେ ରାଜଜେମାର ମୂର୍ତ୍ତିର ଓଠଟି ଧରି ଡାକିଲା ଶିଳ୍ପୀ—

"ଶୁଭଶ୍ରୀ !!!"

"ଶିଳ୍ପୀ"

ଚମକି ଉଠି ଶରବିଦ୍ଧ ପକ୍ଷୀ ପରି ଟଳି ପଡୁଥିଲା ଶିଳ୍ପୀ । ରାଜଜେମା ଦୌଡ଼ି ଆସି ନିଜର ଆକୁଳ ବାହୁ ଦୁଇଟିରେ ତାକୁ ଧରି ପକାଇଲେ...

"ଆରେ ରହିଗଲ ଯେ,...

"ବହୁତ ଦିନ ତଳର ଗପ...ଭୁଲି ଯାଇଥିଲି ଟିକି...ହଁ,ପ୍ରମୋଦ ଉଦ୍ୟାନ ଭିତରେ ତାପରେ ପ୍ରତିଟି ପ୍ରଭାତ, ସନ୍ଧ୍ୟା ଓ ରାତି ଶିଳ୍ପୀ ଓ ରାଜଜେମାର ଜୀବନକୁ ଗୀତିମୟ କଲେ । ଦୁହିଁଙ୍କର ଦିନ ବେଶ୍

Digitized by srujanika@gmail.com

କଟି ଯାଉଥିଲା । ତାପରେ ବନକର କଥା । ଶିଳ୍ପୀର ପ୍ରମୋଦ ଉଦ୍ୟାନରେ ରହିବା କଥା ରାଜାର କାନକୁ ଗଲା । କ୍ରୋଧରେ ଥର ଉଠିଲେ ରାଜା ବଜ୍ରହସ୍ତ । ରାତି ପ୍ରଭାତ ହେବା ସଙ୍ଗେ ସଙ୍ଗେ ଶିଳ୍ପୀକୁ ଶୂଳୀ ଦିଆଯିବ । ଦଣ୍ଡାଦେଶ ଶୁଣି ରାଜଜେମା ମୂର୍ଚ୍ଛା ଗଲେ ।

ଚନର ଗୁଚ୍ଛ କମ୍ପାଇ ବାହାର ପଡିଲା ସହାନୁଭୂତିର ଦୀର୍ଘ ଶ୍ୱାସ । ଅପୂର୍ବର ଆହୁରି ପାଖକୁ ଆସି କହିଲା ସେ "ତାପରେ…ତାପରେ ଭାଇ…

"ତାପରେ…ତାପରେ କାରାଗାରର ଭୀଷଣ ଅନ୍ଧକାର ଭିତରେ ଚେଇଁ ରହି ରହି ତରୁଣ ଶିଳ୍ପୀ ଦେଖୁଥିଲା ଆସନ୍ନ ମୃତ୍ୟୁର ସ୍ୱପ୍ନ । ହଠାତ୍ ଅନ୍ଧକାର କାରାକକ୍ଷ ଆଲୋକିତ ହୋଇ ଉଠିଲା । ବିସ୍ମିତ ନୟନରେ ଦ୍ୱାର ଆଡ଼କୁ ଚାହିଁ ସ୍ତମ୍ଭିତ ହୋଇଗଲା ଶିଳ୍ପୀ । ସମ୍ମୁଖରେ ଶୁଭଶ୍ରୀ…ମୁକ୍ତକେଶା, ଡାହାଣ ହାତରେ ରକ୍ତାକ୍ତ ତରବାରି…ବାମ ହସ୍ତରେ ଦୀପ୍ତ ମଶାଲ"—

"ଶୁଭଶ୍ରୀ"…

"ଚାଲିଯାଅ ଶିଳ୍ପୀ । ଗଛତଳେ ଦ୍ରୁତଗାମୀ କୃଷ୍ଣ ଅଶ୍ୱ । ଆଉ ଏହି ନିଅ ମୋର ତରବାରି…ଆରେ ତୁମେ ଭୟ ପାଉଛ ? ପଥରର ଗୁମ୍ଫରେ ତୁମେ କାଟି ପାର ନିହାଣର ଘାର…ଆଉ…ଆଉ ଏହି ଶାଣିତ ତରବାରିକୁ ତୁମେ ସ୍ୱାର୍ଥପର ମଣିଷର କଲିଜାର ରକ୍ତରେ ଲାଲ କରି ପାରିବ ନାହିଁ ?"

ଶୁଭଶ୍ରୀର ମୁହଁକୁ ଚାହିଁ ଶିଳ୍ପୀ କିଛି କହି ପାରିଲାନି । ଶୁଭଶ୍ରୀର ହାତରୁ ତରବାରିଟି ନେଇ ଅପେକ୍ଷାମାଣ ଅଶ୍ୱ ପୃଷ୍ଠରେ ଲମ୍ଫ ଦେଇ ବସି ପଡ଼ିଲା—ପାଷାଣ ମୂର୍ତ୍ତି ପରି ଚାହିଁ ରହିଲା ଶୁଭଶ୍ରୀ…ହାତର ମଶାଲ ତାର ଅଜାଣତରେ କେତେବେଳୁ ଭୂଇଁରେ ପଡ଼ି ଯାଇଥିଲା—

ଅପୂର୍ବ ଆଖିରୁ ଝରି ପଡ଼ିଲା ଦୁଇଧାର ଲୁହ । କଣ୍ଠସ୍ୱର ଥର

Digitized by srujanika@gmail.com

ଉଠିଲା । ବସିନ୍ତ ନୟନରେ ତାକୁ ଖୋଜିଲା ଚନ୍ଦି ।„

"ଏକ, ତୁମେ କାନ୍ଦୁଛ ଅପୂର୍ବ ଭାଇ ?„

ଚନ୍ଦିକୁ ଆଡ଼ୁରେ ବସିନ୍ତ କଣ ଘୂର୍ଣ୍ଣାୟମାନ ଝଡ଼ପରି ଚାଲିଗଲା ଅପୂର୍ବ; ତାର ଚଲାପଥକୁ ଚାହିଁ କେତେ କଅଣ ଆକାଶ ପାତାଳ ଭାବ ପାଉଥିଲା ଚନ୍ଦି...

× + ×

"ମନ୍ତ୍ରୀ...

"ମହାରାଜ...

"ଦେଖିପାରୁଛ...ସେଇଠି ସହକାର ତଳେ

"ହଁ, ମହାରାଜ ଠିକ୍ ତାପରି" ଦ୍ରୁତ ପଦରେ ମନ୍ତ୍ରୀସହ ଆଗେଇ ଗଲେ ରାଜା...

"ଆସ ଶିଳ୍ପୀ—ଭୟନାହିଁ—ମୁଁ ଶୁଭଶ୍ରୀର ପିତା ଆସିଛି...ମୁଁ ଜାଣି ପାରିଛି ତୁମେ କ୍ଷତ୍ରିୟ । ତୁମର ଆଉ କୌଣସି ଭୟ ନାହିଁ... ଆସ—ଆସ ଅପୂର୍ବ...ଶୁଭଶ୍ରୀ ଆଜ ଉନ୍ମାଦମ୍ନା · ଆରେ ଶୁଭଶ୍ରୀ ଉନ୍ମାଦନା ଶୁଣିବ, ତୁମେ ଚମକ ଉଠିଲନ ? ସେ ଯେ ତୁମରି ପାଇଁ...

"ସେ ଅପୂର୍ବ ନୁହେଁ ମହାରାଜ...ସେ ତାର ମୂର୍ତ୍ତି...

"ମୂର୍ତ୍ତି !!! ସେ ଅପୂର୍ବ ନୁହେଁ..."

ଅଦୂରରୁ ଶୁଭିଲ ଯୁବତୀ କଣ୍ଠର କ୍ରନ୍ଦନ । ସ୍ୱର ଲକ୍ଷ୍ୟ କରି ମାତାଲ ପରି ଟଳ ଟଳ ମନ୍ତ୍ରୀ ସହ ଆଗେଇ ଗଲେ ରାଜା । କିଛିଦୂର ଯାଇ ଛିଡ଼ା ହୋଇଗଲେ ସେ । ପାଦ ତାଙ୍କର ସ୍ଥିର ହୋଇଗଲା । ସମ୍ମୁଖରେ ଶୁଭଶ୍ରୀ ସତେ ଯେପରି ନବ ନିର୍ମିତ ମୂର୍ତ୍ତି ଧଇରେ ଜୀବନ ପାଇ ତାଙ୍କ ଆଡ଼କୁ ଚାହିଁ ଉପହାସ କରୁଛି । ତଳେ ନବନିର୍ମିତ ବେଦ

Digitized by srujanika@gmail.com

ଉପରେ ଶାପ୍ରିତ ଅପୂର୍ବର ଶରୀରକୁ ଟଳାଇ ଦାନ୍ଦୁଛି ଶବର ସର୍ଦ୍ଦାରର ଝିଅ ଶରୀ । ଏକ କୃଷ୍ଣ ଶିଳାର ମୂର୍ତ୍ତିପରି ନିକଟରେ ଛିଡ଼ା ହୋଇଥିଲା ଶବର ସର୍ଦ୍ଦାର...ରାଜା ବଜ୍ରହସ୍ତଙ୍କୁ ଆଉ ବୁଝିବାକୁ ବାକି ରହିଲାନ, ଅପୂର୍ବ ସ୍ବୃଷ୍ଟିପାଇଛି...ଅପୂର୍ବ ସବୁଦିନ ପାଇଁ ଯାଇଛି—ଆଉ ସେହି ସହକାର ବନର ପ୍ରତି ଧୂଳି କଣାରେ ରଖି ଯାଇଛି ତାର ସ୍ବାକ୍ଷର ।



Digitized by srujanika@gmail.com

# ପ୍ଲାଟଫର୍ମ ନମ୍ବର ଟୁ

ଘଡ଼ଘଡ଼ ଚମକ ଉଠୁଥିଲା ବାରମ୍ବାର...

"ଅପାର ଇଣ୍ଡିଆ ଏକ୍ସପ୍ରେସ" କ୍ଷଣିକ ସକାଶେ ଛିଡ଼ାହୋଇ କ୍ଲାନ୍ତ ସୂଚକ ହାଇ ମାରୁଥିଲା । ଦ୍ୱିତୀୟ ଶ୍ରେଣୀ ବିଶ୍ରାମାଗାରର ବେହେରା ବର୍ଷଣମୁଖର ମେଘମାଳା ଆଡ଼କୁ ଚାହିଁ କେତେ କ'ଣ ଭାବି ଚାଲିଥିଲା ମନକୁ ମନ ।

ହଠାତ୍ ଚିନ୍ତାସ୍ରୋତ ତା'ର ବକ୍ଷ ରୁଦ୍ଧ ହୋଇ ଉଠିଲା...

ଭିତରକୁ ପଶି ଆସିଲେ ଦୁଇ ଜଣ । ଜଣେ ବୃଦ୍ଧ ଓ ଅନ୍ୟଟି ଯୁବତୀ—ବୃଦ୍ଧର ଝିଅ ହେବ ବୋଧହୁଏ । ବୃଦ୍ଧର ଜୀବନରୁ ଯୌବନ ବହୁଦିନୁ ମେଲାଣି ନେଇଥିଲେହେଁ ମନର ସଉକ ମରି ନ ଥିଲା । ସାଜ ସଜ୍ଜାର ଆଭିଜାତ୍ୟ ବାର୍ଦ୍ଧକ୍ୟର ସଙ୍କେତକୁ ଲୁଚାଇବାକୁ ଯାଇ ନିରସ ହୋଇ ପଡ଼ୁଥିଲା ସତେ ଯେପରି । ଯୁବତୀଟି ଦେଖିବାକୁ ସୁନ୍ଦର...ଅତି ସୁନ୍ଦର...ସର୍ବାଙ୍ଗରେ ଲାବଣ୍ୟର ଊର୍ମି...ନୟନରେ ଯୌବନର କୁହୁକ...

ଅଧଘଣ୍ଟା ପରେ—କାନ୍ଥ ଘଡ଼ିରେ ଦୁଇ ବାଜି ଦଶ ମିନିଟ ।

ବୃଦ୍ଧର ନାସିକା ଧ୍ୱନି ବିଶ୍ରାମାଗାରରେ ପ୍ରତିଧ୍ୱନି ତୋଳିବାକୁ ଆରମ୍ଭ କଲା । ଯୁବତୀଟି ଅନ୍ୟମନସ୍କ ଭାବରେ ଗୋଟିଏ ଇଂରାଜୀ

Digitized by srujanika@gmail.com

ମ୍ୟାଗାଜିନର ପୃଷ୍ଠା ପରେ ପୃଷ୍ଠା ମେଲାଇ ଯାଉଥାଏ । ବିଶ୍ରାମାଗାରରେ ସେତେବେଳେ ଅନ୍ୟ କେହି ନ ଥିଲେ । ହଠାତ୍ ମ୍ୟାଗାଜିନଟି ଟେବୁଲ ଉପରେ ରଖି ଦେଇ ବାରେଣ୍ଡାରେ ଆସି ଛିଡ଼ାହେଲା ଯୁବକଟି ।

ବରଷା ଥମି ଯାଇଛି...ଆକାଶର ପ୍ରଶସ୍ତ ଗୁମ୍ବଜରେ ଛିନ୍ନ ବାଦଲ କ୍ଲାନ୍ତ ହୋଇ ପଡ଼ିଛି । ଯୁବକଟିର ଚଞ୍ଚଳ ଦୃଷ୍ଟି ଅଦୂରସ୍ଥ ବୃକ୍ଷ ମୂଳରେ ସ୍ଥିର ହୋଇଗଲା । ଦ୍ୱିତୀୟ ଶ୍ରେଣୀ ବିଶ୍ରାମାଗାରର ବୈଦେହୀ ସେହି ବୃକ୍ଷ ମୂଳରେ ଜାଳି ଦେଉଥିଲା ଏକ ତୈଳ ପ୍ରଦୀପ । ଯୁବକଟିର ଦୃଷ୍ଟି କୌତୂହଳୀ ହୋଇ ଉଠିଲା । ବିଜୁଳି ଆଲୋକର ବନ୍ୟା ତଳେ ତୈଳ ପ୍ରଦୀପର କ୍ଷୀଣ ଶିଖାଟି ଥରି ଉଠୁଥିଲା ।

ଟିକିଏ ପରେ ବିଶ୍ରାମାଗାରକୁ ଫେରି ଆସିଲା ବୈଦେହୀ । ଶ୍ରାବଣର ଆକାଶ ଭଳି ଆଖି ଦୁଇଟି ତା'ର ସଜଳ ହୋଇ ଉଠିଥିଲା । ମୁହଁ ପୋଛିବା ଛଳରେ ପୋଛିଦେଲା ସେ ତା'ର ଗହନ ମନ ତଳର ଦୀର୍ଘଶ୍ୱାସ...ଗୋପନରେ । ଯୁବକଟି ଧୀରେ ଧୀରେ ତା'ନିକଟକୁ ଆସିଲା ।

"ବୈଦେହୀ

"କ'ଣ ମା ?"

"ସେହି ବୃକ୍ଷମୂଳ କ'ଣ କୌଣସି ଦେବତାର ପୀଠ ?"

"ଦେବପୀଠ ନୁହେଁ ମା...ସ୍ମୃତି ପୀଠ । ପ୍ରତିଦିନ ସନ୍ଧ୍ୟାରେ ସେଠି ବୃକ୍ଷ ତଳେ ଜାଳିଦିଏ ଏକ ତୈଳ ପ୍ରଦୀପ । ଆଜି ଖାଣ୍ଡିଣ ବର୍ଷା...ବରଷା ବନ୍ଦ ହେବା ପର୍ଯ୍ୟନ୍ତ ତେଣୁ ଅପେକ୍ଷା କରିଥିଲି । ତା'ର ଅନ୍ତିମ ଅନୁରୋଧକୁ..." ବୃଦ୍ଧର ଆଖି ଦୁଇଟି ସଜଳ ହୋଇ ଉଠିଲା ପୁଣି ଥରେ । ଯୁବକଟିର ଲପନରେ ଫୁଟି ଉଠିଲା ସମବେଦନା ଓ ସହାନୁଭୂତିର ସ୍ପଷ୍ଟ ଇଙ୍ଗିତ ।

"ମୁଁ ଦୁଃଖିତ ବୈଦେହୀ...ତୁମ ମନରେ କଷ୍ଟ ଦେଇଛି ।"

Digitized by srujanika@gmail.com

"ନା, ମା, ଆଜ ନୁହେଁ, ବହୁବାର ଏପରି ବହୁ ପ୍ରଶ୍ନ ମୋତେ ଅନେକେ କରିଛନ୍ତି । ଆଜି ମୁଁ ସମସ୍ତଙ୍କୁ କହି ଯାଉଛି ମୋ ଜୀବନର ଏକ ଅଭୁଲା ସ୍ମୃତି । ସେହି କହିବା ଫଳରେ ସତେ ଯେପରି ଦୁଃଖର ପୁଞ୍ଜିଭୂତ ବେଦନା ମୋର କମି ଯାଏ···"

ତତ୍‌କ୍ଷଣାତ୍ ଓଏଟିଙ୍ଗ୍ ରୁମ ଭିତରକୁ ଟାଣିନେଲେ ବେଦବ୍ରତ । ଧୀରେ ଧୀରେ ସେଥିରେ ଉପବେଶନ କରି ନିକଟସ୍ଥ ଆରାମ ଚେଆର-ଟିରେ ବସିବା ପାଇଁ ଯୁବକଟିକୁ ଅନୁରୋଧ କଲେ । ଯୁବକଟିକୁ ବସିବା ପରେ କ୍ଷଣିକ ସକାଶେ ବେଦବ୍ରତର ମୁଖ ଗମ୍ଭୀର ହୋଇ ଉଠିଲା । ତାପରେ ଧୀରେ ଧୀରେ ଆରମ୍ଭ କଲେ ସେ—

"ସେହି ପ୍ଲାଟଫର୍ମ ନମ୍ବର ଚୁ, ତାର ସେହି ବିଶାଳ ବୃକ୍ଷ, ମୂଳରେ ତାର ସେହି ସିମେଣ୍ଟ ବେଦି···ଆଜି ସେହି ବେଦି ଉପରେ ଏ ଯେଉଁ ଟିଟିଲ ପ୍ରଦୀପ, ତାର ଏକ ଇତିହାସ ରହିଛି ମା । ଦୁନିଆର ଆଖିରେ ସେ ଇତିହାସ ମୂଲ୍ୟହୀନ ହୋଇପାରେ · ହେଲେ ମୋ ଆଖିରେ ତା'ର ଯଥେଷ୍ଟ ମୂଲ୍ୟ ଅଛି । ସେହି ବୃକ୍ଷ ମୂଳରେ ତା'ର ଅତୃପ୍ତ ଆତ୍ମା ହୁଏତ ଘୂରି ବୁଲୁଥିବ । ବହୁ ଚେଷ୍ଟା କରି ମଧ ତା ଜୀବନର ରହସ୍ୟ ଉଦ୍‌ଘାଟନ କରି ପାରିନି । ସେ ବି ଜାଣିବା-ପାଇଁ ସୁଯୋଗ ଦେଇନି ମୋତେ···"

"କିଏ ସେ ବେଦବ୍ରତ ?"

"ଆଖି ଆଗରେ ତାର ଛବି ଏବେବି ଭାସି ଉଠୁଛି ମା, ପ୍ରତିଦିନ ଅପରାହ୍ନ ତିନିଟାରେ ଏହି ଷ୍ଟେସନକୁ ଆସୁଥିଲା ସେ । ଦୁଇଟି ପ୍ଲାଟଫର୍ମ ଟିକେଟ କିଣେ—ଅଥଚ ଆସିଥାଏ ଏକା । ଧୀରେ ଧୀରେ ଓଭରବ୍ରିଜ ଉପରେ ଦେଇ ଚାଲିଯାଏ ପ୍ଲାଟଫର୍ମ ନମ୍ବର ଚୁକୁ ପ୍ଲାଟଫର୍ମ ନମ୍ବର ଚୁର ସେହି ବିଶାଳ ବୃକ୍ଷ ମୂଳରେ ଯେଉଁ ସିମେଣ୍ଟ ବେଦି, ତାରି ଉପରେ ବସି ରହେ ସେ । କେତେବେଳେ ମାଲ

Digitized by srujanika@gmail.com

ଗାଡ଼ି ଟିକେଟ୍ ଚିହ୍ନାର କରି ଚାଲିଯାଏ ତାରି ଅଦୂରସ୍ଥ ରେଲ ଉପରେ-କେତେବେଳେ ପ୍ୟାସେଞ୍ଜର, ଏକ୍ସ୍‌ପ୍ରେସ ଓ ମେଲ । ଯାତ୍ରୀ ଓହ୍ଲାଇବା ଓ ଉଠିବାବେଳେ ପ୍ଲାଟ୍‌ଫର୍ମ ମୁଖରିତ ହୋଇଉଠେ । କିନ୍ତୁ ସେ ସେଇଠି ଠିକ ସ୍ଥିମିତ ବସି ରହେ, ଅବିଚଳିତ ଭାବରେ, ଭୃକ୍ଷେପ ହୋଇ । ବହୁତ ଦିନ ପର୍ଯ୍ୟନ୍ତ ତାକୁ ସେପରି ବସିଥିବାର ମୁଁ ଦେଖିଛି । ପ୍ରଥମେ ପ୍ରଥମେ ଭାବୁଥିଲି ଲୋକଟା ହୁଏତ ପାଗଳ । କିନ୍ତୁ ତାର ବେଶଭୂଷା, ଚାଲିଚଳନ ଓ ବ୍ୟବହାର ଦେଖି ସେ ଧାରଣା ମୋର ଆପେ ଆପେ ମରିଗଲା ।

ତାର ପରିଚୟ ପାଇବା ପାଇଁ ମନଟା କୌତୁହଳୀ ହୋଇ ଉଠିଲା । ଦୁଇ ତିନି ଦିନ ସତର୍କତାର ସହିତ ତାର ଗତିବିଧି ଲକ୍ଷ୍ୟ କଲି । ଠିକ ଅପରାହ୍ନ ସେହି ତିନିଟାରେ ଆସେ, ଦୁଇଟି ପ୍ଲାଟଫର୍ମ ଟିକେଟ କିଣେ···ଅଥଚ ଆସିଥାଏ ଏକା । ଧୀରେ ଧୀରେ ଓଭର ବ୍ରିଜ ଉପର ଦେଇ ଚାଲିଯାଏ ପ୍ଲାଟଫର୍ମ ନମ୍ବର ଟୁକୁ ··ବସେ ସେହି ବୃକ୍ଷମୂଳରେ, ସିମେଣ୍ଟ ବେଞ୍ଚ ଉପରେ ।

ଦିନକର କଥା । ରାତି ସେତେବେଳକୁ ୧୨ ଟା, ଏଇ ଦ୍ୱିତୀୟ ଶ୍ରେଣୀର ବାରଣ୍ଡାରେ ଅନ୍ୟମନସ୍କ ଭାବରେ ପଦଚାଳନା କରୁ କରୁ ଦୃଷ୍ଟି ପଡ଼ିଲା ମୋର ସେହି ପ୍ଲାଟଫର୍ମ ନମ୍ବର ଟୁ'ରେ । ଧୀରେ ଧୀରେ ଲାଇନ ପାର ହୋଇଗଲି । ସେହି ବୃକ୍ଷମୂଳରେ ବସିଥିଲା ସେହି ଯୁବକ । ବହୁତ ସମୟ ଧରି ଛିଡ଼ା ହେଲି । ମୋର ଉପସ୍ଥିତି ସତେ ଯେପରି ସେ ଜାଣି ପାରି ନଥିଲା । ଡ଼ାକିଲି···'ବାବୁ !' ସତେ ଯେପରି ଚମକି ଉଠିଲା ସେ ! ଚାହିଁଲା ମୋତେ । ମୁହଁରେ ନୀରସ ହସର ମଳିନ ରେଖା । କହିଲି···"ବର୍ତ୍ତମାନ ତ କୌଣସି ଗାଡ଼ି ନାହିଁ ବାବୁ, କାହାକୁ ଅପେକ୍ଷା କରିଛନ୍ତି କି ?' ସେମିତି ନୀରସ ହସର ରେଖା ପୁଣି ଥରେ ତାଙ୍କ ଅଧରରେ ଚମକି ଉଠିଲା—"ଏଇତ ଏମିତି ବସିବାକୁ ମୋତେ

Digitized by srujanika@gmail.com

ଭାରି ଭଲ ଲାଗେ ବେହେରା ।”

ତା’ଆଡ଼କୁ ଚାହିଁ ରହିଲି । ଅନେକଟା ଠିକ ମୋରି ରଜତ୍ ପରି···ଠିକ ସିମିତି ପୁରିଲା ପୁରିଲା ଗାଲ···କଜଳ କଳା କୁଞ୍ଚିତ କେଶ···ଦୀର୍ଘ କପାଳ ସେହିପରି ଚକ୍‌କଣ । ବୟସ ବି ବୋଧହୁଏ ସମାନ ହେବ···” ବୃଦ୍ଧର କଣ୍ଠ ଅଟକି ଉଠିଲା ।

“ରଜତ୍ ?”

ହଁ, ମା, ମୋର ନୟନର ପିତୁଳା ରଜତ୍···ଗୋଟିଏ ବୋଲି ପୁଅ । ବହୁତ କଷ୍ଟରେ ପଢ଼ାଇ ଥିଲି । ହେଲେ ହଠାତ୍ ଦିନେ କଲେରାରେ ଆକ୍ରାନ୍ତ ହୋଇ···’ ବୃଦ୍ଧର ଆଖିରୁ ଦୁଇ ବିନ୍ଦୁ ଲୁହ ଝରି ପଡ଼ିଲା । ଧୀରେ ଧୀରେ ଦୁଇ ହାତରେ ଲୁହ ପୋଛି ଦେଇ କହି ଚାଲିଲା ବେହେରା -

‘ଯୁବକଟିକୁ ଅତି ନିକଟରେ ମୁହଁକୁ ମୁହଁ ଦେଖି ରଜତର ଛବି ମୋ ଆଖି ଆଗରେ ଭାସି ଉଠିଲା । ସେଥିପାଇଁ ଯୁବକ ସକାଶେ ଅନ୍ତରରୁ ମୋର ଝରି ପଡ଼ିଲା ବୃଦ୍ଧ ସ୍ନେହର ଅବାରିତ ଧାରା, ଝର ଝର ହୋଇ । କହିଲି—‘ବାବୁ,ରାତି ଅନେକ ହେଲାଣି···’

ହାତଘଣ୍ଟା ଆଡ଼କୁ ଚାହିଁ ଉଠି ପଡ଼ିଲା ସେ । ପିଠିରେ ମୋର ହାତ ବୁଲାଇ କହିଲା···‘ଠିକ କହିଛ ବେହେରା, ଅନେକ ରାତି ହେଲାଣି ।’ ନିଜେ ଗୋଟିଏ ସିଗାରେଟରେ ଅଗ୍ନି ସଂଯୋଗ କରି ମୋ ଆଡ଼କୁ ଗୋଟିଏ ବଢ଼ାଇ ଦେଲା । ତାପରେ ଧୀରେ ଧୀରେ ଆଗେଇ ଗଲେ ଓଭରବ୍ରିଜ ଆଡ଼କୁ ।

ପ୍ରତିଦିନ ଠିକ ସେହି ଟିନେଟାରେ ଆସେ । ଦୁଇଟି ପ୍ଲାଟଫର୍ମ ଟିକେଟ କିଣେ—ଅଥଚ ଆସିଥାଏ ଏକା । ଧୀରେ ଧୀରେ ଓଭରବ୍ରିଜ ଉପର ଦେଇ ଚାଲିଯାଏ ପ୍ଲାଟଫର୍ମ ନମ୍ବର ଟୁକୁ । ବସେ ସେହି ବୃକ୍ଷମୂଳର ସିମେଣ୍ଟ ବେଞ୍ଚ ଉପରେ । କେତେବେଳେ ମାଲଗାଡ଼ି ଅଦୃଶ୍ୟ

Digitized by srujanika@gmail.com

ରେଲ ଉପରେ ବିକଟ ଚିତ୍କାର କରି ଗ୍ଲିଯାଏ— କେତେବେଳେ ପ୍ୟାସେଞ୍ଜର, ଏକ୍‌ସପ୍ରେସ୍, ମ୍ୟାଲ । ଯାତ୍ରୀ ଓହ୍ଲାଇବା ବେଳେ ଓ ଉଠିବାବେଳେ ପ୍ଲାଟଫର୍ମ ମୁଖରିତ ହୋଇ ଉଠେ । କିନ୍ତୁ ସେ ସେଇଠି ସ୍ଥିମିତ ବସି ରହେ, ଅବିଚଳିତ ଭାବରେ ଭୂମିହୋଇ । ରାତି ବହୁତ ହେଲଣି ବୋଲି ମୁଁ ତାକୁ ଚେତାଇ ଦିଏ । ଅଧରରେ ତାର ଚମକି ଉଠେ ସେହି ନୀରସ ହସର ରେଖା । ହାତଘଣ୍ଟା ଆଡ଼କୁ ଚାହିଁ ଉଠି ପଡ଼େ । ତାପରେ ପିଠିରେ ମୋର ହାତ ବୁଲାଇ କହେ—"ଠିକ କହୁଛ ବେହେରା, ଅନେକ ରାତି ହେଲାଣି । ନିଜେ ଗୋଟିଏ ସିଗା-ରେଟରେ ଅଗ୍ନି ସଂଯୋଗ କରି ମୋ ଆଡ଼କୁ ଗୋଟିଏ ବଢ଼ାଇ ଦିଏ । ତାପରେ ଧୀରେ ଧୀରେ ଆଗେଇଯାଏ ଓଭରବ୍ରିଜ ଆଡକୁ ।

ଦିନକର କଥା...

ଶ୍ରାବଣ ବର୍ଷା ହେଉଥିଲା । ବିଶ୍ରାମାଗାର ଭିତରେ ଟେବୁଲ ଉପରେ ବସିଥିଲି...ଆଖିରେ ମାଡ଼ ଆସୁଥିଲା ତନ୍ଦ୍ରା । ହଠାତ୍ କାନ୍ଥ ଘଡ଼ିରେ ବାଜିଲା ବାର...ତନ୍ଦ୍ରା ଭାଙ୍ଗିଗଲା । ବିଶ୍ରାମାଗାରରେ ଯାତ୍ରୀ ନଥିଲେ ସେଦିନ । ବାରଣ୍ଡାକୁ ଆସିଲି । ବୃଷ୍ଟିର ବେଗ ବଢ଼ି ଚାଲିଥିଲା । ପ୍ଲାଟଫର୍ମ ନମ୍ବର ୪ ଉପରେ ମୋର ଦୃଷ୍ଟି ପଡ଼ିବା ମାତ୍ରେ ଚମକି ଉଠିଲି । ଛତା ଧରି ଆଗେଇ ଗଲି । ସେହି ଗଛମୂଳେ ପହଞ୍ଚି ଦେଖିଲି ଗଛକୁ ଆଉଜି ବସିଥିଲା ସେ । ଆଖି ଦୁଇଟି ମୁଦ୍ରିତ... ଦେହରୁ ଝରି ପଡୁଥିଲା ବିନ୍ଦୁ ବିନ୍ଦୁ ପାଣି...

ଡାକିଲି...'ବାବୁ !'

ଉତ୍ତର ନାହିଁ ।

ପୁଣି ଥରେ ଡାକିଲି । ଏଥର ସେ ଆଖି ମେଲିଲା । ଆଖି ଦୁଇଟି ରକ୍ତିମ, ଛଳ ଛଳ । ମୋ ଆଡ଼କୁ ଚାହିଁଲା । ପୁଣି ଆଖି ଦୁଇଟି ମୁଦ୍ରିତ ହେଲା...ଓଠ ଥରି ଉଠିଲା ।

Digitized by srujanika@gmail.com

ଆତଙ୍କିତ ହୋଇ ଉଠିଲି ମୁଁ । ଦେହରେ ହାତଦେଇ ଦେଖିଲି ନିଆଁ ପରି ତାତିଛି । ତାଙ୍କର ଅନିଚ୍ଛା ସତ୍ତ୍ୱେ ତାଙ୍କୁ ନେଇ ଆସିଲି ବିଶ୍ରାମାଗାରକୁ । ପଚାରିଲି...ବାବୁ, ତୁମ ଘର କେଉଁଠି ?"

ବହୁ କଷ୍ଟରେ ସତେ ଯେପରି ସେ ମୋ ଆଡ଼କୁ ଚାହିଁଲା । ତା'ପରେ କମ୍ପିତ କଣ୍ଠରେ କହିଲା—'ଘରକୁ ଯିବାକୁ ମୁଁ ଚାହେଁନା ବେହେରା । ମୋତେ ଦୟାକରି ସେହି ବୃକ୍ଷମୂଳକୁହିଁ ନେଇ ଚାଲ, ତା'ର ସେହି ସିମେଣ୍ଟ ବେଞ୍ଚ ଉପରେ ଶୁଆଇ ଦିଅ ମୋତେ, ସେହି ଠାରେହିଁ...'

ଆଖିରୁ ତାର ଝରି ପଡ଼ିଲା ଦୁଇ ବିନ୍ଦୁ ଲୁହ । ଟିକଏ ପରେ ଏଣୁ ତେଣୁ କ'ଣ ଗୁଡ଼ାଏ ଅସ୍ପଷ୍ଟ କହି ସଂଜ୍ଞାହୀନ ହୋଇ ପଡ଼ିଲା ସେ । ଆଗରୁ କହିଛି ମା, ତାଙ୍କୁ ଦେଖି ରଜତକୁ ଫେରି ପାଇଲା ପରି ଲାଗୁଥିଲା ମୋତେ, ରିକ୍ସାରେ ତାଙ୍କୁ ଘରକୁ ନେଇ ଆସିଲି । ଦୁଇ ତିନି ଦିନ ପର୍ଯ୍ୟନ୍ତ ଦେହରେ ଭୀଷଣ ଉତ୍ତାପ । ପ୍ରାୟ ସଂଜ୍ଞାହୀନ ଅବସ୍ଥାରେ ଥିଲା ସେ । ଦିନ ରାତି ମୋର ସ୍ତ୍ରୀ ସହିତ ତାର ସେବାରେ ଲାଗି ରହିଲୁ ।

ତାଙ୍କର ପରିଚୟ ପାଇବା ପାଇଁ ଉତ୍କଣ୍ଠିତ ହୋଇ ପଡ଼ିଥିଲି ମୁଁ । ହେଲେ ପ୍ରଳାପ...ଖାଲି ପ୍ରଳାପ । ମଝିରେ ମଝିରେ ସେହି ଗୋଟିଏ କଥା "ତୁମେ ମୋତେ ଅବିଶ୍ୱାସ କରି ପାରିଲ ?" ବାସ୍, ସେତିକି, ବାକି ସବୁ ଅସ୍ପଷ୍ଟ...

ତିନିଦିନ ପରେ...

ଆଖି ମେଲାଇ ସେ ଚାହିଁବା ଦେଖି ଆନନ୍ଦରେ ଅଧୀର ହୋଇ ପଡ଼ିଲି ମୁଁ । ସବୁ କଥା ବୁଝିବାକୁ ତାଙ୍କୁ ଡ଼େରି ଲାଗିଲାନି । ଚାହାଣୀରେ ତାଙ୍କର ଭରି ରହିଥିଲା କୃତଜ୍ଞତା । ତାଙ୍କ ପକେଟ୍‌ରେ ଯାହା କିଛି-ଥିଲା ସବୁଗୁଡ଼ା ନିକଟସ୍ଥ ଗ୍ରେଟ ଟେବୁଲ ଉପରେ ରଖି ଦେଇଥିଲି ମୁଁ ।

Digitized by srujanika@gmail.com

ସେ ଆଉକୁ ଥରେ ଗୁହିଁ ଆଖି ବୁଜିଲା ସେ । ତା'ପରେ ଧୀର ଗଳାରେ ଡ଼ାକଲେ—"ବେଦେଇ ।"

ଆନନ୍ଦରେ କହିଲି "ବାବୁ ।"

"ମନିବେଗ୍ ଭିତରେ ଦୁଇଶତ ପଚାଶ ଟଙ୍କା ଅଛି । ତୁମେ ମୋର ଯଥେଷ୍ଟ ଉପକାର କରିଛ । ମୋର ଅନୁରୋଧ ରକ୍ଷା କରି ଏହି ସାମାନ୍ୟ ଦାନ ଗ୍ରହଣ କରିବ ବୋଲି ବିଶ୍ୱାସ ।"

ଏହି ସମୟରେ କାନ୍ଥ ଘଣ୍ଟାରେ ବାଜି ଉଠିଲା ତିନି । ଚମକି ଉଠିଲା ସେ । ଉତ୍ତେଜିତ ହେଲା ଭଳି ଉଠି ବସିଲା । ଉଠିବାକୁ ନ ଦେବା ପାଇଁ ଡ଼ାକ୍ତର ପରାମର୍ଶ ଦେଇଥିଲେ, ପ୍ରତି ମୁହୂର୍ତ୍ତରେ ଆଶଙ୍କାର ଯଥେଷ୍ଟ କାରଣ ଥିଲା । ବହୁ କଷ୍ଟରେ ଶୁଆଇ ଦେଲି ।

ହେଲେ ଟିକିଏ ପରେ—ସତେ ଯେପରି ସେ ଅତି ବ୍ୟସ୍ତ ହୋଇ ପଡ଼ିଲେ ।

"ମୋତେ ଦୟାକରି ନେଇ ଚାଲ ବେଦେଇ...ନେଇ ଚାଲ ସେହି 'ପ୍ଲାଟଫର୍ମ ନମ୍ବର ଛ'କୁ । ଆଜି ମୋରି ପାଇଁ କିଣି ଆଣ ଦୁଇଟି ପ୍ଲାଟଫର୍ମ ଟିକେଟ...."

ଅଜଣା ଆଶଙ୍କାରେ ବ୍ୟାକୁଳ ହୋଇ ପଡ଼ିଲି ମୁଁ । ଭୀଷଣ ଯନ୍ତ୍ରଣାରେ ସତେ ଯେପରି ସେ ଛଟପଟ ହେଉଥିଲା । ମୋର ସ୍ତ୍ରୀକୁ ତାର ନିକଟରେ ବସାଇ ଦେଇ ବାହାରି ପଡ଼ିଲି ଡ଼ାକ୍ତରଙ୍କ ଘରଆମ ବସାରୁ ବହୁତ ଦୂର । ଡ଼ାକ୍ତରଙ୍କୁ ନେଇ ଯେତେବେଳେ ଘରକୁ ଆସିଲି..."

ବେଦେଇ ଆଉ କହି ପାରିଲାନି । ଆଖି ଦୁଇଟିରୁ ଝରିଆଇ ଆସିଲା ଶ୍ରାବଣର ବାରିଧାର । ଟିକିଏ ପରେ ଭଙ୍ଗା ଗଳାରେ କହିଲା "ତାକୁ ଆଉ ଦେଖି ପାରିଲିନି ମା, ହେଲେ ମୃତ୍ୟୁ ପୂର୍ବରୁ ମୋ ସ୍ତ୍ରୀକୁ ସେ ଯାହା କହି ଯାଇଥିଲା ତାକୁ ଆଜି ପର୍ଯ୍ୟନ୍ତ ରକ୍ଷା

Digitized by srujanika@gmail.com

କରି ଆସିଛୁ । ତେଣୁ ପ୍ରତିଦିନ ସନ୍ଧ୍ୟାରେ ସେହି ବୃକ୍ଷ ମୂଳେ ଜାଳ-ଦିଏଁ ଏକ ତୈଳ ପ୍ରଦୀପ...

" ସେ ବାବୁ କିଏ ଜାଣି ପାରିଲନି ବେଦେହୀ ?"

" ପାରିଲି ମା, ହେଲେ ବହୁତ ପରେ, ସେ ଜଣେ ଭାରି ନାମ-ଜାଦା ଲୋକ । ମୃତ୍ୟୁର କିଛି ଦିନ ପରେ ଖବର କାଗଜରେ ତାର ଫଟୋ ବାହାରିଥିଲା । ଖବର କାଗଜରୁ ଫଟୋଟି କାଟି ନେଇଛି ମୁଁ । ସବୁବେଳେ ମୋର ପକେଟରେ ରଖିଥାଏ

"ଦେଖି..." ଯୁବତୀଟି ଆଗ୍ରହୀ ହୋଇ ଉଠିଲା ।

ଏହି ସମୟରେ ବାହାରୁ ଶୁଭିଲା "ବେଦେହୀ - ବେଦେହୀ" ବେଦେହୀ ଚଞ୍ଚଳ ହୋଇ ଉଠିଲା । ଖବର କାଗଜର କାଟିଂଟି ଯୁବତୀକୁ ବଢ଼ାଇ ଦେଇ ବିଶ୍ରାମାଗାରରୁ ଦ୍ରୁତ ପଦକ୍ଷେପରେ ନିଷ୍କ୍ରାନ୍ତ ହେଲା ସେ ।

ବେଦେହୀ ଯେତେବେଳେ ବିଶ୍ରାମାଗାରକୁ ପୁଣି ଫେରି ଆସିଲା ସେତେବେଳେ ବିଶ୍ରାମାଗାର ଭିତରେ ଯୁବତୀଟିକୁ ନ ଦେଖି ବିସ୍ମିତ ହୋଇ ପଡ଼ିଲା । ସୁପ୍ତ ବୃଦ୍ଧର ନାସିକା ଧ୍ୱନି ପୂର୍ବ ପରି ଶୁଭୁଥାଏ . ବାରଣ୍ଡାକୁ ଆସି ଏଣେ ତେଣେ ଅନାଇ ଅନାଇ ହଠାତ୍ ତାର ଦୃଷ୍ଟି ସ୍ଥିର ହୋଇଗଲା 'ପ୍ଲାଟଫର୍ମ ନମ୍ବର ୫ରେ' । ଧୀରେ ଧୀରେ ଆଗେଇ -ଗଲା ସେ ।

ବୃକ୍ଷ ମୂଳରେ ତୈଳ ପ୍ରଦୀପର ଶିଖାଟି ପୂର୍ବପରି କମ୍ପି ଉଠୁ-ଥିଲା । ଆଉ ତାର ନିକଟରେ ଲୋଟି ପଡ଼ି ସେହି ଯୁବତୀଟି ଗୋଟେ ଶିଶୁଟି ପରି କଇଁ କଇଁ ହୋଇ କାନ୍ଦି ଉଠୁଥିଲା । ନିକଟରେ ବେଦେହୀକୁ ଦେଖି ସାଶ୍ରୁ ନୟନରେ ତାରି ଆଡ଼କୁ ଚାହିଁଲା ବିଦେଶୀ ଯୁବତୀ·· ବେଦେହୀ ଆଖିର ଲୁହ ଲୁଚାଇବାକୁ ଯାଇ ସାମନାକୁ ଚାହିଁଲା--

Digitized by srujanika@gmail.com

ଧଳାରଙ୍ଗ ବୋଳା କରଗେଟ ଟିଣ ଉପରେ ବଡ଼ ବଡ଼ କଳା ଅକ୍ଷରରେ ଲେଖାଥିଲା—"ପ୍ଲାଟଫର୍ମ ନମ୍ବର ଟୂ"



Digitized by srujanika@gmail.com

# ସ୍ମାରକୀ

ଯଷ୍ଟି ଉପରେ ଭର ଦେଇ ବହୁ କଷ୍ଟରେ ନିଜକୁ ପଡ଼ିଯିବା ଅବସ୍ଥାରୁ ରକ୍ଷାକଲା ବୃଦ୍ଧ । ପାଦ ଦୁଇଟି ତାର ସତେ ଯେପରି ପାଷାଣ ପାଲଟି ଗଲା । କୋଟରଗତ ଚକ୍ଷୁର ଦୁର୍ବଳ ଦୃଷ୍ଟି ଥରଟିଏ ବୁଲି ଆସିଲା ଗୃହଆଡ଼େ ବ୍ୟର୍ଥତାର ଗ୍ଲାନିରେ ଜର୍ଜରିତ ହୋଇ । ସନ୍ଧ୍ୟା ଆଗତ ପ୍ରାୟ । ତଳେ ଆର୍ଦ୍ର ମାଟି···ଉପରେ ବର୍ଷଣ-ଇଚ୍ଛୁକ ମେଘମାଳାର ଚପଳତା···ଦୁଇ ପାଶ୍ୱର୍ରେ ସବୁଜ କ୍ଷେତର ବର୍ଣ୍ଣ-ସମାବେଶ କ୍ଷଣିକ ପାଇଁ ବୃଦ୍ଧ ଝଲସି ଉଠିଲା···ମାଟି ହସି ଉଠୁଛି । ଆଜ୍ କେଉ ବା କପରି ନ ହସିବ ?

ଏଇ ବର୍ଷା ହେଲା···

ଅସହାୟ ବୃଦ୍ଧ ପ୍ରତି ନିର୍ମମ ଉପହାସ କରି ଚମକି ଉଠିଲା ବିଦ୍ୟୁତ । ପ୍ରଚଣ୍ଡ ଘଡ଼ ଘଡ଼ିରେ ନିଥରି ବସୁଧା ଥରି ଉଠିଲା କି ? ବିଦ୍ୟୁତାଲୋକରେ ଅଦୂରସ୍ଥ ପ୍ରକାଣ୍ଡ ବରଗଛ କ୍ଷଣିକ ପାଇଁ ବୃଦ୍ଧର ଆଖି ଆଗରେ ଝଲସି ଉଠିଲା । ଧୀରେ ଧୀରେ ଅମାନିଆ ପାଦ ଦୁଇଟିକୁ ବହୁ କଷ୍ଟରେ ଆଗକୁ ବଢ଼ାଇଲା ସେ । ଦେଖିଲେ ମନେ ହେଉଥିଲା ସତେ ଯେପରି କବର ଭିତରୁ ଜୀର୍ଣ୍ଣ ମୂର୍ଦ୍ଧାର ହଠାତ୍ ଜୀବନ ପାଇ ମାଟିର ମମତାକୁ ଏଡ଼ି ନ ପାରି ଆଗେଇ ଆସୁଛି ଧୀରେ ଧୀରେ ।

ଝଙ୍କାଳିଆ ବରଗଛ ତଳେ ପହଞ୍ଚି ବୃଦ୍ଧର ମନେ ହେଲା ଆଖି ଆଗରେ ତାର ମେଞ୍ଚା ମେଞ୍ଚା ଅନ୍ଧାର ଜମି ପଡ଼ୁଛି । ଧୀରେ ଧୀରେ ଗଛମୂଳରେ ଥିବା ବଡ଼ ପଥରଟିରେ ବସି ପଡ଼ିଲା ସେ । ଥଣ୍ଡା

Digitized by srujanika@gmail.com

ପବନର କୋମଳ ସ୍ପର୍ଶ ହୃଦୟ ଓ ମନକୁ କିଞ୍ଚିତ୍ ହାଲୁକା କରିଦେଲା । ଆକାଶରୁ ଝରୁଥିଲା ବର୍ଷା, ବୃଦ୍ଧର ମନକୋଣରେ ଝରି ପଡ଼ୁଥିଲା ଅଭୁଲା ଅତୀତ, ଭୁଲିବାକୁ ଚେଷ୍ଟାକରି ମଧ୍ୟ ଯାହାକୁ ସେ ଭୁଲି ପାରିନି ।

"କିଏ ?"

ଚମକି ଉଠିଲା ବୃଦ୍ଧ, ବିଦ୍ୟୁତ୍ ଚମକି ଉଠିଲା । ବୃଦ୍ଧ କ'ଣ ଯେପରି କହିବାକୁ ଚେଷ୍ଟାକଲା । କିନ୍ତୁ ଆଗନ୍ତୁକ ଆକୁଳ ବିସ୍ମୟରେ ପାଟି କରି ଉଠିଲା···"ମଉସା !!!" ବୃଦ୍ଧର ଆଖିରୁ ବନ୍ଦ ବନ୍ଦ ଲୁହ ଝରୁଥିଲା । ଉଠିବାକୁ ଚେଷ୍ଟାକଲା ସେ । କିନ୍ତୁ ଆଗନ୍ତୁକ ଦୁଇ ହାତକୁ ତାର ଧରି ଚକାଇ ପାଖରେ ବସି ପଡ଼ିଲା । ଦୁହେଁ କାନ୍ଦୁଥିଲେ··· ଆଉ କିଛି ବୁଝି ନ ପାରି ନିକଟସ୍ଥ ବିଲରୁ ହଠାତ୍ ମଣ୍ଡୁକମାନେ ଚିତ୍କାର କରି ଉଠିଲେ···"କେଁ କଟର୍, କେଁ କଟର୍···

"ମଉସା, କିମିତି ଏ ଅନ୍ଧାର ଭିତରେ ଚିହ୍ନିଲ ମୋତେ ?"

"ଚିହ୍ନିବିନି ? ଦୀର୍ଘ ୫୦ ବର୍ଷର ବନ୍ଧୁତ୍ୱ ପରା, ତେବେ ଅନ୍ଧାରରେ ପ୍ରଥମେ ଚିହ୍ନି ପାରି ନ ଥିଲି, ହଠାତ୍...

"ଆମ ଘରେ ସମସ୍ତେ ଭଲ ଅଛନ୍ତି ତ ?

ଆଗନ୍ତୁକ କିଛି କହିଲାନି । କେବଳ କଇଁ କଇଁ ହୋଇ କାନ୍ଦି ଉଠିଲା । ଆତଙ୍କରେ ଶିହରି ଉଠିଲା ବୃଦ୍ଧ । ତାର ମନେ ହେଲା ସତେ ଯେମିତି ଏଇ ତାର ମାତୃସମା ବସୁଧା ଦୁଇଫାଳ ହୋଇ ଯାଉଛି । ସମଗ୍ର ବ୍ରହ୍ମାଣ୍ଡ କମ୍ପି ଉଠୁଛି । ମନେ ହେଲା ସତେ ଯେପରି ତାର ଶ୍ୱାସ ରୁଦ୍ଧ ହୋଇ ଆସୁଛି । ଠିକ୍ ଏହି ସମୟରେ ତାକୁ ଖୁବ୍ ଜୋରରେ ହଲାଇ ଦେଲା ଆଗନ୍ତୁକ । ଉଚ୍ଛ୍ୱସିତ କ୍ରନ୍ଦନରେ ଫାଟି ପଡ଼ିଲା ସେ ।

"ତୁମକୁ ପୁଲିସ ଧରି ନେବା ପରେ ଗାଁର ସମସ୍ତେ ଉତ୍ୟକ୍ତ ହୋଇ ପଡ଼ିଥିଲେ । ଅତ୍ୟାଚାରୀ ଜମି ମାଲିକର ସର୍ବନାଶ କରିବାକୁ

Digitized by srujanika@gmail.com

ଶପଥ କରିଥିଲେ ସମସ୍ତେ । ହେଲେ ଆମେ କେହି କିଛି କରି ପାରିଲୁନି । ଆମେ ଯେ ଗରିବ ସଙ୍ଗାତ । ଗରିବ ହୋଇ ଜନ୍ମ ହେବାଠାରୁ ଆଜ ବଡ଼ ପାପ୍ପୀ ସତେ ଯେପରି କିଛି ନାହିଁ । ତେଣୁ'ନା ଗାଁ ମଙ୍ଗଳା ବି' ଆମର ଦୁଃଖ ଶୁଣିଲେ ନାହିଁ···

"ଯାସିନ୍ନମ ଓ ତାର ମା କ'ଣ ଆଜ ଇହଧାମରେ ନାହାନ୍ତି ?"

ବୃଦ୍ଧର କଣ୍ଠ ସ୍ୱରରେ ଗଭୀର ଉତ୍କଣ୍ଠା ।

"ଧୈର୍ଯ୍ୟ ଧରିବାକୁ ହେବ, ମଣିଷ ଆମେ, ଦେବତାଠାରୁ ମଧ ଆମର ସହିବାର ଶକ୍ତି ବେଶି । ତୁମେ ଯିବାର ଠିକ୍ ସାତଦିନ ପରେ ତୁମ ସ୍ତ୍ରୀ ଜ୍ୱରରେ ପଡ଼ିଲେ । ଆଜ ସେଇ ଜ୍ୱରରେ···

"ମଇନ !!!"

ଛାତିକୁ ପଥରଠୁ ବଳି ଶକ୍ତ କରିବାକୁ ହେବ । ଦୁଃଖ ଯେତେବେଳେ ଆସେ ସେତେବେଳେ ଏକା ଆସେନି, ତାର ସାଥୀ ସଙ୍ଗାତକୁ ସାଥିରେ ନେଇ ଆସେ । ତୁମ ସ୍ତ୍ରୀ ଆଖି ବୁଜିବାର ମାସ ଦୁଇଟି ପରେ ଦିନେ ହଠାତ ଯାସିନ୍ନମ କୁଆଡ଼େ ଚାଲିଗଲା । ବହୁତ ଖୋଜିଛୁ ତାକୁ, ହେଲେ ନିରାଶ ହେବାକୁ ପଡ଼ିଛି, ତୁମେ ଫେରି-ଆସିଛ, ମୋର ବିଶ୍ୱାସ ଯାସିନ୍ନମ ବି' ଫେରିଆସିବ ଦିନେ । ପୁଣି ଥରେ ତୁମ ସଂସାର ହସି ଉଠିବ । ଉଠ, ଚାଲ, ଦିନସାରା ପେଟରେ କିଛି ପଡ଼ିନଥିବ । ମୋଘର କ'ଣ ତୁମ ଘର ନୁହେଁ ?

ବୃଦ୍ଧ କିନ୍ତୁ ନୀରବ ।

"ମଇନ···

"ପାଦ ମୋର ଚଳୁନି ମଇନ···

"ଠିକ୍ କହୁଛ, ରହ, ଟିକିଏ ବସିଥାଅ, ମୁଁ ଇନା ଗୋରୁ ଗାଡ଼ିଟା ନେଇ ଆସୁଛି ।" ବୃଦ୍ଧ କିଛି କହିବା ପୂର୍ବରୁ ଅନ୍ଧାର ଭିତରେ ମିଶି ଯାଇଥିଲା ସେ । ବୃଦ୍ଧ ସେଇଠି ବସି ରହିଲା, ସେହି କଜଳକଳା

Digitized by srujanika@gmail.com

ଅନ୍ଧାର ଭିତରେ, ପଥର ଉପରେ ଚେଥରଟି ପରି । ବିଦ୍ୟୁତ ଚମକ ଉଠୁଥିଲା । ନିକଟସ୍ଥ ଶସ୍ୟ କ୍ଷେତ୍ରର ପାଚିଲା ଟେଙ୍ଗୁଡ଼ି ଧାନ ଝଲସି ଉଠୁଥିଲା । ବୃଦ୍ଧ ସେହି ଆଡ଼କୁ ଚାହିଁ ରହିଲା ! ବେଡ଼ା ଧାନ ପାଚିବାକୁ ଆହୁରି ଦେଖିଁ ଅଛି ।

ବସି ବସି ଭାବୁଥିଲା ବୃଦ୍ଧ । ଏଇ ମାଟି, ଠିକ୍ ସେହିପରି ସେହିପରି ପଡ଼ି ରହିଛି । ବାପ ଅଜା ଚଉଦ ପୁରୁଷ ଧରି ଚାଷ କରି ଆସୁଥିଲେ ଏହି ଜମିକୁ । କେତେ ଚାଲିଗଲେଣି, କେତେ ଆସିଲେ । ହେଲେ ଏଇ ମାଟିର କିଛି ପରିବର୍ତ୍ତନ ହୋଇନାହିଁ । ଠିକ୍ ପୂର୍ବପରି ପଡ଼ି ରହିଛି ଏଇଠି ।

ଏ ଭିତରେ ବହୁତ ଦିନ ଗଡ଼ି ଯାଇଛି । ତଥାପି ବୃଦ୍ଧର ମନେ ହେଉଛି ସତେ ଯେପରି କାଲିକାର କଥା । ଧାସିରାମ ତାର ସାନଥାଏ, ବଜାରକୁ ମା ସହିତ ବୁଲି ଯାଇ ଦେଖି ଆସିଲା କେତେ କ'ଣ ନୂଆ ଜିନିଷ । ଘରେ ଆସି ଅଳି କଲା, ନୂଆ ପେଣ୍ଟ, ନୂଆ କାମିଜ୍ ପାଇଁ । ବିଲରୁ ଧାନ ଆସିଥିଲା । ପିଲାର ଅଳି ଦେଖି ଭାବିଲା, ସେ ଧାନ ବିକି ତା ପାଇଁ କିଣି ଆଣିବ ନୂଆ ପୋଷାକ । କିନ୍ତୁ ଠିକ୍ ସେହି ସମୟରେ ଆସିଲା ଜମି ମାଲିକର ଲୋକ । ବୃଦ୍ଧ ତା'ଠାରୁ ଯାହା ଶୁଣିଲା ସେଥିରେ ମୁଣ୍ଡ ତାର ଘୂରିଗଲା । ଜମି ମାଲିକର ଝିଅର ବାହାଘର ହେବ । ସବୁ ବରଷ ଜମି ମାଲିକକୁ ଯେତେ ଧାନ ସେ ଦିଏ ଏଥର ତାର ଦେଢ଼ ଗୁଣ ଦେବାକୁ ପଡ଼ିବ । ଆଜି ତାର ଯେଉଁ ଦୁଇଟା ବଡ଼ ବଡ଼ କସବି ଚାପି ଅଛି ସେ ସବୁ ଉପହାର ହିସାବରେ ନେଇ ଯିବାକୁ ଆସିଛି ଜମି ମାଲିକର ଲୋକ ।

ବୃଦ୍ଧ କିଛି କହିଲାନି, ଅନେକ କିଛି ଯଦିଓ ତାର କହିବାର ଥିଲା । କିଛି କରି ପାରିଲାନି, ଅନେକ କିଛି ଯଦିଓ ତାର କରିବାର ଥିଲା । ଜମି ମାଲିକର ଲୋକ ନିଜେ ଧାନ ମାପି ଗାଡ଼ିରେ ଲଦିଲେ,

Digitized by srujanika@gmail.com

ଆଜ ବୃଦ୍ଧ ? ସେ ତାର କଳା ବଳଦଟି ପରି ନବୋଧ ଗୁହାଣୀରେ ଗୁହିଁ ରହିଥିଲା ସେହି ଆଡ଼କୁ ।

ଦୁଇଟା କସରା ଖାସିକୁ ଟାଣି ଟାଣି ଯେତେବେଳେ ଗୁକର ନେଇ ଯାଉଥିଲା ସେତେବେଳେ ଘାସିରାମ ଦୌଡ଼ି ଯାଇ ଗୋଟିଏ ଛେଳିକୁ ଧରି କାନ୍ଦଉଠିଲା..."ବାବା ମୋର ଖାସି, ମୋର"...ଜମିଦାର ଲୋକର ମନା ସେ ମାନିଲାନି । ତାକୁ ଶେଷରେ ପେଲି ଦେଇ ଖାସି ଦୁଇ-ଟାକୁ ଟାଣି ଟାଣି ନେଇଗଲା ଜମି ମାଲିକର ଲୋକ । ଭୂଇଁରେ ପଡିଯାଇ ଘାସିରାମର ଗୋଡ଼ରୁ କେଇବୁନ୍ଦ ରକ୍ତ ଝରି ପଡ଼ିଲା । ବୃଦ୍ଧର ରକ୍ତ ଗରମ ହୋଇ ଉଠିଲା । କିନ୍ତୁ କିଛି କରି ପାରିଲାନି ସେ । ଘରର କବାଟକୁ ଆଉଜି ଛିଡ଼ା ହୋଇଥିଲା ତାର ସ୍ତ୍ରୀ । ଆଖିରେ ତାର ଭରା ମେଘର ବେଦନା । ତା ଲୁହର ମୂଲ୍ୟ ଗାଁ ମଙ୍ଗଳା, ଯାହାକୁ ସେ ନିତି ମୁଣ୍ଡିଆ ମାରେ, ସେତ ବୁଝିଲାନି, ଆଉ ଜମି ମାଲିକର ଲୋକ ତାର ବା ବୁଝିବାର ଦରକାର କଣ ?

ସମୟ ଗଡ଼ି ଚାଲିଲା...

ଘାସିରାମ ଅନ୍ୟାନ୍ୟ ଧାଙ୍ଗଡ଼ା ମାନଙ୍କ ପରି ବଳରେ ହଳ କରି ପାରିଲା । ତାର ବଳିଷ୍ଠ ଶରୀର ଆଡ଼କୁ ଗୁହିଁ ବୃଦ୍ଧ ଦୀର୍ଘ ନିଃଶ୍ୱାସ ପକାଏ, ଭଲ କରି ଦି'ମୁଠା ଖାଇବାକୁ ପାଇଲେ ପିଲାଟା ଆହୁରି ବଳିଷ୍ଠ ହୋଇ ପାରନ୍ତା । ହଠାତ୍ ଦିନେ ଗାଁକୁ ଖବର ଆସିଲା । ଭାଗଚାଷ ଆଇନ କାର୍ଯ୍ୟକାରୀ ହେବ । ଜମିରୁ ଚାଷୀକୁ ଜମି ମାଲିକ ଉଚ୍ଛେଦ କରି ପାରିବେନି...ଚାଷୀ ଶୋଷଣରୁ ରକ୍ଷା ପାଇବ ଏତେ-ଦିନେ । ସେ ଦିନ ବସ୍ତିପାଦିକା ଗାଁରେ ଆନନ୍ଦ କହିଲେ ନ ସରେ । ଗାଁ ମଙ୍ଗଳା ନିକଟରେ ନାନାପ୍ରକାର ପୂଜା ହେଲା, କୁକୁଡ଼ା ବଳି ପଡିଲା । ହଣ୍ଡିଆ ପିଇ ଧାଙ୍ଗଡ଼ା ଧାଙ୍ଗଡ଼ୀମାନେ ନାଚିଲେ । ଆଉ ବୁଢ଼ାମାନେ ଲମ୍ବା ଲମ୍ବା ପିକାକୁ ଖୁବ ଜୋରରେ ଟାଣି ଉପଭୋଗ

Digitized by srujanika@gmail.com

କରୁଥିଲେ ସେହି ନାଚକୁ । ମନ କୋଣରେ ତାଙ୍କର କେତେ ସ୍ୱପ୍ନିଳ ସ୍ମୃତି ଉଙ୍କି ମାରୁଥାଏ ।

ବୃଦ୍ଧର ଠିକ୍ ମନେ ପଡୁଛି ସେ ଥର ଜମିରେ ଖୁବ ଭଲ ଧାନ ହୋଇଥିଲା । ଧାସିରାମ ସହିତ ମିଶି ଅକ୍ଲାନ୍ତ ପରିଶ୍ରମ କରିଥିଲା ସେ । ଜମି ମାଲିକ ଏଣିକି ତାର ହାତରୁ ଭାତ ଗୁଣ୍ଡାକ ନେଇପାରି ପାରିବେନି ଏଇ ନୂତନ ଆନନ୍ଦ ଭିତରେ ଗଭୀର ଉନ୍ମାଦନା ଥିଲା । ବୃଦ୍ଧ ଭାବିଲା ଭଲ ଭାବରେ ଦି’ମୁଠା ଖାଇବାକୁ ପାଇ ଧାସିରାମ ତାର ଏଥର ଖୁବ୍ ବଳିଷ୍ଠ ହେବ । ଆସନ୍ତା ସାଲକୁ ତାବଲପୁରର ମୁଣ୍ଡାର ସେ ଯେଉଁ ମଝିଆ ଝିଅଟି, ଆଃ, ବେଶ୍ ମାନିବ ତାର ଧାସିରାମକୁ । ବୃଦ୍ଧ ନିଜର ସୁଖ ସ୍ୱପ୍ନରେ ନିଜେ ଅଧୀର ହୋଇ ପଡୁଥିଲା ।

ଧାନ ପାଚିଲା···

ପାହାଡ଼ ପାଖରୁ ଯେତେବେଳେ ଧରମ ଦେବତା ଉଏଁ, ସେତେ-ବେଳେ ତାର କିରଣରେ ସୁନା ରଙ୍ଗର ଧାନ ଚକ୍ ଚକ୍ କରି ଉଠେ ସରଗି କାଠିଟି ଦାନ୍ତରେ ବୁଲାଇ ବୁଲାଇ ବୃଦ୍ଧ ଆସି ଧାନ ଗଛ ପାଖରେ ଛିଡ଼ା ହୁଏ । ପ୍ରଭାତ କାଳୀନ ପବନରେ ଧାନଗଛ ଗୁଡ଼ିକରେ ଯେତେ ଯେପରି ତରଙ୍ଗ ଖେଳିଯାଏ, ଆଉ ବୃଦ୍ଧର ଚିତ୍ତ ମଧ୍ୟ ଆନନ୍ଦରେ ଉଲସି ଉଠେ ।

ସେଦିନର କଥା । ଏବେ ବି ପୂରାପୂରି ବୃଦ୍ଧର ମନେ ଅଛି । ସନ୍ଧ୍ୟା ହୋଇ ନ ଥାଏ, ତେବେ ହେବାକୁ ବେଶି ଡେରି ନ ଥାଏ । ଦାଣ୍ଡ ପିଣ୍ଡାରେ ବସି ପିକା ଟାଣୁଥିଲା ସେ । ଜମି ମାଲିକର ଲୋକ ଆସି ପହଞ୍ଚିଲା, ଠିଆ ହୋଇ ସଲାମ କଲା ତାକୁ । କିନ୍ତୁ ସେ ତାର ସଲାମ ପ୍ରତି ଦୃଷ୍ଟି ନ ଦେଇ କହିଲା···“ଶୁଣ୍ ଗୋବରା, କାଲି ବାବୁର ଲୋକ ଜମିରୁ ଧାନ କାଟିବେ, ଧାନ ସଙ୍ଗେ ସଙ୍ଗେ ବାବୁଙ୍କ ଘରକୁ ବୁହା ହୋଇ ଯିବ । ସବୁ ଧାନ ବୁହା ହୋଇ ସରିଲେ ତୁ ଯିବୁ ।

Digitized by srujanika@gmail.com

କାଗଜରେ ଟିପ ଦେଇ ତୋର ପାଉଣା ନେଇ ଆସିବୁ ।”

ବୃଦ୍ଧ ଗୋବରର ମନେ ହେଲା ସତେ ଯେପରି ସେ ସ୍ୱପ୍ନ ଦେଖୁଛି । କ'ଣ ଯେପରି କହିବାକୁ ଯାଉଥିଲା ସେ । କିନ୍ତୁ ସେତେବେଳକୁ ଜମି ମାଲିକର ଲୋକ ଚାଲି ଗଲାଣି । ବୃଦ୍ଧକୁ ଉପହାସ କରୁଥିବା ତାର ସାଇକେଲର ଘଣ୍ଟି ଅସ୍ପଷ୍ଟ ହୋଇ ଆସୁଥିଲା । ବୃଦ୍ଧର ମନେ ହେଲା ସତେ ଯେପରି ସେ ମୂକ, ପାଲଟି ଯାଇଛି । ଗାଁ ବାଲା ସମସ୍ତେ ଶୁଣିଲେ । ଛାତି ଗୁଡ଼ିକ ଥରି ଉଠିଲା । ସମସ୍ତଙ୍କର କପାଳରେ ଯେପରି ଏଇଆ ଲେଖାଅଛି ଡେଙ୍ଗବ ଶୁଖିଲା ପତ୍ର ପରି ଅବହେଳରେ ଝଡ଼ି ପଡ଼ିବେ ସିନା । ଗାଁ ମୁଣ୍ଡରେ ମୁଖିଆ ମୁଖିଆ ଲୋକଙ୍କର ମଧ୍ୟରେ ନାନା ପ୍ରକାର ଆଲୋଚନା ହେଲା, ହେଲେ କେହି ଭଲ ଉପାୟଟିଏ ଖୋଜି ପାଇଲେନି । ବୃଦ୍ଧ ଗୋବର ସବୁ ଶୁଣୁଥିଲା । ହଠାତ୍ ଉତ୍ତେଜିତ ହୋଇ ଉଠି ପଡ଼ିଲା ସେ···“ନା, ନା, ମୁଁ ଏହା କେବେ କରିବାକୁ ଦେବି ନାହିଁ । ଏହି ହାଡ଼ ମାଂସର ଦେହରେ ଖରା, ବର୍ଷା, ଶୀତ ସହି ମାଟିରେ ସୁନା ଫଳାଇଛି, ମୁଁ ବଞ୍ଚି ଥାଉଁ ଥାଉଁ ସେଥିରେ କେହି ହାତ ଦେଇ ପାରିବେନି ।”

ତା ପରଦିନ ।

ସେ ପାରି ଗାଁର ତିରିଶ ଜଣ ମୂଲିଆ ନେଇ ଜମି ମାଲିକର ଲୋକ ଆସିଲା । ବଡ଼ ଠେଙ୍ଗାଟି ଧରି ଜମି ପାଖରେ ଛିଡ଼ା ହୋଇଥିଲା ବୃଦ୍ଧ ଗୋବର । ହାସିବମ ଗ୍ୱର ଢନ ଆଗରୁ ତାର ମାମୁଁ ଘରକୁ ଯାଇଥାଏ । ଜମି ମାଲିକର ଲୋକ ଧାନ କାଆଁଶ ଦେଖାଇ ଦେଲା । ମୂଲିଆମାନେ ଦା'ଧରି ଆଗେଇ ଗଲେ । ଉତ୍ତେଜିତ ଭାବରେ ସେମାନଙ୍କ ଆଗରେ ଛିଡ଼ା ହେଲା ବୃଦ୍ଧ । ସର୍ବାଙ୍ଗ ତାର ରାଗରେ ଥରୁଥାଏ, ମୁହୂର୍ତ୍ତକ ପାଇଁ ମୂଲିଆମାନେ ଶଙ୍କିଗଲେ । ପର ମୁହୂର୍ତ୍ତରେ ଜମି ମାଲିକର ଲୋକ ଆଦେଶ ଦେଲା···“ଯାଅ, କାମ କରି ଯାଅ,

Digitized by srujanika@gmail.com

ମଜୁରୀ ଉପରେ ବୋତଲେ ଲେଖାଁଏ ମଦ ପାଇବ ।" ମଦ ନାମ ଶୁଣି ମୂଲିଆ ମାନଙ୍କର ପାଟିରୁ ଲାଳ ବୋହିଗଲା ସତେ ଯେପରି । ଆଗେଇ ଗଲେ ସେମାନେ । ବୃଦ୍ଧର ଠେଙ୍ଗା କେତେଥର ଉପରକୁ ଉଠିଲା ଓ ପଡ଼ିଲା ...

ତିନି ଚାରି ଜଣ ମୂଲିଆ ମୁଣ୍ଡର ତାଜା ରକ୍ତ ପିଚ୍‌କାରୀ ମାରିଲା ପରି ଖେଳିଗଲା । ବୃଦ୍ଧକୁ ପୁଲିସ ଗିରଫ କଲା । ଅଦାଲତରେ ମାଜିଷ୍ଟ୍ରେଟ୍ ଦେଲେ ରାୟ—ପାଞ୍ଚ ବର୍ଷ ସଶ୍ରମ କାରାଦଣ୍ଡ । କାରାଗାରର ନିର୍ମମ ଆବେଷ୍ଟନୀ ଭିତରୁ ମୁକ୍ତିପାଇ ବୃଦ୍ଧ ଫେରି ଆସିଛି ଆଜି ତାର ଗାଁ ମାଟିକୁ ; କିନ୍ତୁ ସେ ଆଜି କେବଳ ଜମିରେ ଚାଷ କରିବାର ଅଧି-କାର ହରାଇ ନାହିଁ । ହରାଇଛି ଆହୁରି ଅନେକ କିଛି, ଯାହା ଏ ଜନ୍ମରେ ସେ ଆଉ ଫେରି ପାଇବନି ।

ହଦୂଙ୍ଗତ ପୁଣି ଝଲସି ଉଠିଲା ।

ଅଦୂରସ୍ଥ ଶସ୍ୟ କ୍ଷେତ୍ରର ପକ୍ୱ ଚଗୁଡ଼ି ଧାନ ବୃଦ୍ଧର ଆଖିରେ ମାୟାର ଅଞ୍ଜନ ଲଗାଇ ଦେଲା । ଛୁଆ ହେଲା ସେ । ଏଇ ତାର ଶସ୍ୟ କ୍ଷେତ୍ର । ବାପ ଅଜା ଚଉଦ ପୁରୁଷ ହାଡ଼ଭଙ୍ଗା ଖଟଣି କରିଛନ୍ତି ଏଇଠାରେ ! ଏତେ ବିପତ୍ତି ସତ୍ତ୍ୱେ କି ନିବିଡ ତାର ଆକର୍ଷଣ !!! ଏଇ ମାଟି, କେବଳ ମାଟି ନୁହେଁ, ତାର ମା ସେ ।

ବୃଦ୍ଧ ଯନ୍ତ୍ର ଚାଳିତ ପରି ବରଗଛ ତଳରୁ ଧୀରେ ଧୀରେ ଆଗେଇ ଗଲା ଶସ୍ୟକ୍ଷେତ୍ର ଆଡ଼କୁ । ପକ୍ୱ ଧାନର ପ୍ରାଣ ମତାଣିଆ ଗନ୍ଧରେ ଅନ୍ତର ତାର ପୁଲକ ଉଠୁଥିଲା । ସେ ଆଗେଇ ଯାଉଥିଲା, କେବଳ ଆଗେଇ ଯାଉଥିଲା । ଅଦୂରସ୍ଥ ମଞ୍ଚାଉପରୁ କିଏ ପାଟିକରି ଉଠିଲା...

"କୋଉ୍ ହେଯ୍...

ବୃଦ୍ଧର କାନରେ ସେ ଡ଼ାକ ଶୁଭୁନି । ମାଟିର ଡାକ ଭିତରେ ମଣିଷର ଡ଼ାକ ଲୁଚି ଯାଇଥିଲା । ମୁହୂର୍ତ୍ତିକ ପାଇଁ ବୃଦ୍ଧ ନଇଁ ପଡ଼ି ଧାନ-

Digitized by srujanika@gmail.com

ଗଛ ଉପରେ ବୁଲାଇ ଆଣିଲା ତାର ଥରିଲା ହାତ । ସଙ୍ଗେ ସଙ୍ଗେ ଅସ୍ପଷ୍ଟ ଚିତ୍କାର କରି ଲୋଟି ପଡ଼ିଲା ସେ, ସେଇ ଧାନଗଛ ଉପରେ । ଜମି ମାଲିକର ବନ୍ଧୁକଗୁଳିର ଅବ୍ୟର୍ଥ ସନ୍ଧାନ ବ୍ୟର୍ଥ ହୋଇ ପାରେନା । ସଙ୍ଗେ ସଙ୍ଗେ ବରଗଛ ତଳୁ ପାଟି ଶୁଭିଲା···"ମଇନ·· ହୋ ମଇନ···

ଜମି ମାଲିକର ଲୋକ ପାଟିକରି ଦୌଡ଼ି ଆସିଲା, "ଗ୍ରେନ ଗିର୍‌ଗିଆ ।" ବୃଦ୍ଧର ମଇନ ଲଣ୍ଠନଟି ଧରି ଗୋରୁଗାଡ଼ି ଗୁଡ଼ି ଦୌଡ଼ି ଆସିଲା ଘଟଣାସ୍ଥଳକୁ । କିନ୍ତୁ ଯାହା ଦେଖିଲା ସେଥିରେ ମୂକ ପାଲଟି ଗଲା ସେ । ନିଜକୁ ପଡ଼ିଯିବା ଅବସ୍ଥାରୁ ବହୁକଷ୍ଟରେ ରକ୍ଷା କଲା । ମୃତ ପ୍ରାୟ ତାର ମଇନ ସେତେବେଳକୁ ଅସହ୍ୟ ବେଦନାରେ ଛଟ ପଟ ହେବାର ଶକ୍ତି ହରାଇ ଆସୁଥିଲା । ଲଣ୍ଠନ ଆଲୁଅରେ ଚିକ୍ ଚିକ୍ କରୁଥିଲା ତା ଆଖିର ବନ୍ଦ ବନ୍ଦ ଲୁହ । ମାତୃସମା ମାଟି ପ୍ରତି ତାଥିର ମମତାର ଅଭ୍ରାନ୍ତ ସ୍ମାରକୀ···



Digitized by srujanika@gmail.com

# ରାତ୍ରିର ଯବନିକା ।

( ଏକ )

ଆଧୁନିକ ପ୍ରେମିକାର ହୃଦୟ ପରି, ଚନ୍ଦ୍ରିକାର ଅବୁଝା ମାୟା ବିସ୍ତାରିତ ହୋଇ ପଡୁଛି । ତଥାପି, ତଥାପି ବିକଳାଙ୍ଗ ଚନ୍ଦ୍ର ନିଜକୁ ଚାହିଁ ନିଜେ ସଙ୍କୁଚିତ ହୋଇ ପଡୁଥିଲେ । ଜହ୍ନ ଆଲୁଅରେ ମ୍ରିୟମାଣ ତାରକାପୁଞ୍ଜ ଅବୋଧ ଭାଷାରେ କେତେ କ'ଣ କହି ଯାଉଥିଲେ ସତେ ଯେପରି । ହେନା ଚାହିଁଥିଲା···ନିର୍ନିମେଷ ନୟନରେ ସେହି ଆଡ଼କୁ ଚାହିଁ ରହିଥିଲା । ମନରେ ତାର ଅସଂଖ୍ୟ ପ୍ରଶ୍ନବାଚୀ । ହଠାତ୍ ମୁକୁଳା ପିଠିରେ କା'ର କୋମଳ ସ୍ପର୍ଶ, ଚମକି ପଡ଼ିଲା ସେ, ପରକ୍ଷଣରେ ଲପନରେ ତାର ଫୁଟି ଉଠିଲା ପୁଞ୍ଜିଭୂତ ଅଭିମାନ···

"ଏତେ ରାତି ଯାଏଁ କୁଆଡ଼େ ଥିଲ ?"

ଦୂରରୁ ଭାସିଆସୁଥିବା ବିରହୀ ଚକ୍ରବାକର କାରୁଣ୍ୟ ଭିତରେ ସେ ପ୍ରଶ୍ନ ହଜିଗଲା । ଧୀନା ନୀରବରେ କେବଳ ତାର ଡ଼ାହାଣ ହାତର ଅଙ୍ଗୁଳି ଗୁଡ଼ିକ ହେନାର ଉଚ୍ଛୃଙ୍ଖଳ କେଶରାଶି ଉପରେ ବିଶୃଙ୍ଖଳ ଭାବରେ ସଞ୍ଚାଳନ କରି ଯାଉଥିଲା । ତାକୁ ନିରୁତ୍ତର ଦେଖି ହେନାର ଅଭିମାନ ମରିଗଲା···

"କଣ ହୋଇଛି କି ?"

ଧୀନା ମଦ ଖାଇଛି । ନିଶା ଘୁଡ଼ି ଘୁଡ଼ି ଆସୁଥିଲା । ବଳିଷ୍ଠ

Digitized by srujanika@gmail.com

ବାହୁରେ ହେନାକୁ ନିଜ ଛାତି ଉପରକୁ ଭିଡ଼ି ଆଣିଲା ସେ । ସେତେ-
ବେଳକୁ ମହୁଲ ବନରେ ମାତାଲ ପବନ ଅଧୀର ହୋଇ ଉଠିଥିଲା ।

"କହିବନି ?"

"ହେନା···

"କୁହ,ମୋ ରାଣି ଅଛି···

"ରାତି ପାହିବା ପୂର୍ବରୁ ମୋତେ ଚାଲିଯିବାକୁ ହେବ ହେନା···

"କେଉଁଆଡ଼େ ?" ଅଜଣା ଆଶଙ୍କାରେ ଭିତରେ ଭିତରେ ଥର
ଉଠିଲା ହେନା ।

"ସୁଦୂର ଆସାମ, ଖୁବ୍ ବଡ଼ କ'ଣ ଗୋଟାଏ କାମ ଲାଗିଛି
ସେଠି ରାଶିଟଙ୍କା ମଜୁରି ମିଳିବ...

"ନା, ନା, ଟଙ୍କା ଆମର ଲୋଡ଼ା ନାହିଁ...

"ତୁ ବୁଝୁଛୁ ହେନା ମୋ ମନରେ ଦୁଃଖ ହେଉନାହିଁ ? କିନ୍ତୁ
କ'ଣ କରିବ କୁଲି ସର୍ଦ୍ଦାରର ଖାତାରେ ସହି କରି ଆଗତୁରା କୋଡ଼ିଏ
ଟଙ୍କା ନେଇ ଆସିଛି, ନ ଯାଇ ଉପାୟ ନାହିଁ ! ମଙ୍ଗଳୁ, ବିରଜୁ ସଙ୍ଗେ
ସଙ୍ଗେ ରାଜି ହୋଇଗଲେ । ସର୍ଦ୍ଦାରକୁ ମୁଁ ନାହିଁ କରି ପାରିଲିନି ।"

"ତୋତେ ଛାଡ଼ି ବେଶି ଦିନ ରହି ପାରିବନି ହେନା, ଚଞ୍ଚଳ
ଫେରି ଆସିବ..."

ଧାନାର କଣ୍ଠସ୍ୱର ଥରି ଉଠିଲା...ଆଉ ଥରି ଉଠିଲା ଏକ
ସମୟରେ ଦୁଇଟି ଓଠ ..ହେନାର ଆଖିରୁ ବନ୍ଦ୍ ବନ୍ଦ୍ ଲୁହ ଝରି
ପଡ଼ୁଥିଲା ।

( ଦୁଇ )

ଚାଳିଆ ଘରଟିଏ- ଦୁଇଟି ମାତ୍ର ବଖରା । ଗୋଟିଏ ବଖରାରେ
ଧାନାର ବୁଢ଼ୀମାର ନାସିକା-ଗର୍ଜନ ତୀବ୍ର ହୋଇ ଉଠିଥିଲା । ଅନ୍ୟଟିରେ
ଗୋଟିଏ ଅର୍ଦ୍ଧଛିନ୍ନ ପଟିଆ ଉପରେ ଧାନା ଓ ହେନା । ଅଳ୍ପ ଦୂରରେ

Digitized by srujanika@gmail.com

ତୈଳ ପ୍ରଦୀପଟିଏ ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା । ଆଲୋକ ଓ ଅନ୍ଧାରର ଶଙ୍କିତ ମିଳନ । ଅଧମେଲା ଝରକା ଉପରେ ମେଞ୍ଚାଏ ଜୋଛନା ଝରି ପଡୁଛି । ନୀରବତା ଭଙ୍ଗ କରି କହିଲା ହେନା···

"କେବେ ଫେରିବ ?"

"ଠିକ୍ କରି ପାରୁନି, ତେବେ ଶୀଘ୍ର, ନିଶ୍ଚୟ ଶୀଘ୍ର···

ହେନାର ଆଖିରୁ ଲୁହର ଦାଗ ଲିଭି ନ ଥିଲା । ତାକୁ ନିଜ ପାଖକୁ, ଅତି ପାଖକୁ ଭିଡ଼ି ଆଣିଲା ଦୀନା । ହେନା ମଧ୍ୟ ସମସ୍ତ ଦୁଃଖକୁ କ୍ଷଣିକ ସକାଶେ ଚୁପି ରଖି ନିଜର ପ୍ରାପ୍ୟ ଆଦାୟ କରିବାକୁ ଚଞ୍ଚଳ ହୋଇ ପଡ଼ିଲା । କେତେବେଳେ ଦୀନାର ବୁକୁ ଉପରେ ଲୋଟି ପଡ଼ି, କେତେବେଳେ ଅଳପ ହସି, କେତେବେଳେ ବା ଦୀନାର ହାତ ପାପୁଲିକୁ ନିଜ ହାତ ପାପୁଲି ଭିତରେ ଚୁପି ଧରି ଅଭିମାନୀ ସ୍ୱରରେ କେତେ କ'ଣ କହି ଯାଉଥିଲା ସେ । ଯେତେବେଳେ ତାର ନିଶ୍ୱାସ ଦୀନାର ନିଶ୍ୱାସ ସହିତ ଏକାକାର ହୁଏ ସେତେବେଳେ ଥଟ୍ଟା କରି କହେ··· "ସହରରେ କ'ଣ ମନେ ଥିବ ?" ଉତ୍ତରରେ ଦୀନା ତାକୁ ଆହୁରି ପାଖକୁ ଭିଡ଼ି ଆଣେ, ଆଉ ସେହି ଭିଡ଼ି ଆଣିବା ଭିତରେ ସତେ ଯେପରି ନୀରବରେ ଅଥଚ ସ୍ପଷ୍ଟ ଭାବରେ ହେନାକୁ ଜଣାଇଦିଏ "ମୁଁ ଆଉ ଅନ୍ୟ କାହାରି ହୋଇ ପାରିବନି ହେନା, ମୁଁ ତୋର, ଏକା ତୋର···" ସେହି ଅଳ୍ପକ୍ଷଣ ଭିତରେ ହେନାର ସମସ୍ତ ଦାବୀ ଦୀନା ପୂରଣ କରିବାରେ ମନ ପ୍ରାଣ ଢାଳି ଦେଇଥିଲା ।

ରାତିର ଶେଷ ଯାମ···

ଅଦୂରସ୍ଥ ଘନ ଶାଳ ବନର ଅନ୍ତରାଳରେ ଢଳି ପଡୁଥିଲା ମାତାଲ ଚନ୍ଦ୍ର । ହେନା ଓ ଦୀନା ଆଖିରେ ତନ୍ଦ୍ରାର ମଧୁର ସ୍ପର୍ଶ । ବାହାରୁ ଶୁଭିଲା ମଙ୍ଗଳୁରି ଡାକ—"ଦୀନା, ଦୀନା"···ତନ୍ଦ୍ରା ଅପସରି ଗଲା । ଦୀନା ଚାହିଁଲା ହେନାକୁ, ହେନା ଦୀନାକୁ ।

Digitized by srujanika@gmail.com

ପୁଣି ଥରେ ସେହି ଡାକ···"ଦୀନା, ଓ ଦୀନା···
"ହଁ, ହଁ, ଟିକିଏ ରହ "
ଦୁଇଟି ଦୀର୍ଘ ନିଃଶ୍ୱାସ ଏକାକାର ହୋଇଗଲା । ବ୍ୟଥିତା ପ୍ରେୟାର ଥରିଲା ଅଧରରେ ଚୁମ୍ବନ କଲା ଦୀନା । ଧୀରେ ଧୀରେ ତାର କପାଳ ଉପରେ ହାତ ବୁଲାଇ ଆଣି କହିଲା···"ମୋର ଯତ୍ନ ନେବୁ, ସୁନାଝିଅ ପରି, କାନ୍ଦିବୁନି, ଶୀଘ୍ର ଫେରି ଆସିବି···" କଣ୍ଠସ୍ୱର ତାର ଥର ଉଠିଥିଲା । ହେନା କିଛି କହି ପାରିଲାନି । ମନରେ ତାର ପୁଞ୍ଜି-ଭୂତ ପ୍ରଶ୍ନ, ହୃଦୟରେ କଥାର ଅସଂଖ୍ୟ ଲହରୀ । କିନ୍ତୁ ତଥାପି, ତଥାପି ବ୍ୟଥିତା ହେନା କେବଳ ଗୋଟିଏ ଦୀର୍ଘ ନିଃଶ୍ୱାସ ଭିତରେ ନିଜକୁ ପ୍ରକାଶ କଲା ।

ମୁହଁ ଧୋଇ ସାରି ଦୀନା ଯେତେବେଳେ ଶ୍ରେଷ୍ଠ ବସ୍ତ୍ର ବ୍ୟାଗଟି ଧରିଲା, ସେତେବେଳେ କାନ୍ଥରେ ଆଉଜି ଛିଡ଼ା ହୋଇଥିଲା ହେନା । ତେଲିଲ ପ୍ରଦୀପର ଶିଖା ଲିଭି ଲିଭି ଆସୁଥିଲା । ଦୀନା ହେନାର ପାଖରେ ଛିଡ଼ା ହୋଇ କହିଲା···"ଯାଉଛି", ଆନତ ନୟନରେ ବାଷ୍ପାକୁଳ କଣ୍ଠରେ କହିଲା ହେନା- "ନିଜ ଘରର ଯତ୍ନ ନେବ···"

ଧୀରେ ଧୀରେ ପାଖ ବଖରାକୁ ଗଲା ଦୀନା । ବୁଢ଼ୀ ମାର ନିଦ ଭାଙ୍ଗି ଯାଇଥାଏ, କାନ୍ଥରେ ହାତ ଦେଇ ଧୀରେ ଧୀରେ ଛିଡ଼ା ହେଲା ସେ ।

"ଯାଉଛି ମା । ଭାବିବୁନି,"
ବୁଢ଼ୀ ବହୁତ କିଛି କହିବାକୁ ଯାଇ କିଛି କହି ପାରିଲାନି ।

( ତିନି )

ଦୀନା ବିଦେଶ ଯିବାର ଷଷ୍ଠମାସ ହୋଇ ଯାଇଛି । ପ୍ରତିମାସ କୁଲି ସର୍ଦ୍ଦାର ଜରିଆରେ ଟଙ୍କା ଆସେ । ହେନା କିନ୍ତୁ ନିଜେ ମୂଲଲାଗି

Digitized by srujanika@gmail.com

ଯାହା ପାଏ, ସେଥିରେ ଶାଶୁ ବୋହୂ ଦ୍ୱ' ଜଣ କୌଣସି ପ୍ରକାର ଚଳି ଯାଆନ୍ତି । ହେବା ମନେ ମନେ ଠିକ୍ କରିଛି ଦୀନା ଯେଉଁ ଟଙ୍କା ପଠାଇବ ସେସବୁ ସାଇତି ରଖିବ । ତା'ପରେ ଯେତେବେଳେ ଦୀନା ଫେରି ଆସିବ, ସେହି ଟଙ୍କାରେ କିଣିବ ଜମି, ବଳଦ ଓ ଗାଈ । ଦୀନାକୁ ଆଉ କେବେ ବିଦେଶ ଯିବାକୁ ପଡ଼ିବ ନାହିଁ ।

ସାରାଦିନ ନିରବଚ୍ଛିନ୍ନ କାର୍ଯ୍ୟ ଭିତରେ ବୁଡି ରହେ ହେବା, କିନ୍ତୁ ଯେତେବେଳେ ସନ୍ଧ୍ୟାର ତୋରଣ ତଳେ ଝରିପଡ଼େ ମେଞ୍ଚା ମେଞ୍ଚା ଅନ୍ଧକାର, ଆଉ ଆକାଶରେ ଗୋଟି ଗୋଟି କରି କେତେ ତାରଫୁଲ ଫୁଟି ଉଠେ, ହେବାର ମନ ଛନ ଛନ ହୁଏ, ନାରୀପ୍ରାଣ ତାର ସବୁଠାରୁ ବଳି ବଡ଼ ଅଭାବରେ ଛଟ ପଟ ହୋଇ ଉଠେ । ଶାଶୁକୁ ଖାଇବାକୁ ଦେଇ ନିଜେ ଯେତେବେଳେ ଖାଇବାକୁ ବସେ, ସେତେବେଳେ ଭାବେ, ଦୀନା ଏତେବେଳେ ଖାଇଥିବ କି ନାହିଁ !! ଦିନ ସାରା ପରିଶ୍ରମ କରି ସେ କେତେ କ୍ଳାନ୍ତ ହୋଇ ପଡ଼ିଥିବ । ରାନ୍ଧି ନ ପାରି ଉପାସରେ ଶୋଇପଡ଼ି ନ ଥିବ ତ ??? ହେବା ଆଉ ଭାବି ପାରେନା, ହାତରୁ ଭାତ ଗୁଣ୍ଡା ଖସି ପଡ଼େ ।

ରାତି ଗଭୀର ହୁଏ···

ଏକାକୀ ବିଛଣାରେ ପଡି ଛଟ ପଟ ହୁଏ ହେବା, ଅତୀତକୁ ବର୍ତ୍ତମାନ ଭିତରେ ଖୋଜେ ସେ,କିନ୍ତୁ ପାଏନି । ଶୋଇବା ପାଇଁ ଚେଷ୍ଟା କରି ମଧ୍ୟ ବହୁତ ରାତି ପର୍ଯ୍ୟନ୍ତ ଶୋଇ ପାରେନି ।

ଦୀନା ଘରୁ ଯିବାର ବହୁଦିନ ହୋଇ ଗଲାଣି । ହଠାତ୍ ଦିନେ ଚିଠି ଆସିଲା । ସେ କାମ ଛାଡି ଚାଲି ଆସୁଛି । କାଲି ରାତି ଗାଡ଼ିରେ ପହଞ୍ଚିବ । ହେବାର ଆନନ୍ଦ କହିଲେ ନ ସରେ । ପଢ଼ି ନ ଜାଣିଲେ ସୁଦ୍ଧା ଚିଠିଟିକୁ କୁଳ ସର୍ଦ୍ଦାରଠାରୁ ନେଇ ପାଖରେ ରଖିଛି । ଧଳା କାଗଜ ଉପରେ କେତେ ଗୁଡ଼ିଏ ବିଚିତ୍ର ବଙ୍କା ବଙ୍କା ଗାର । କେତେ-

Digitized by srujanika@gmail.com

ଅର ଯେ ହେନା ତା ଉପରେ ଆଖି ବୁଲାଇ ଆଣିଛି ତାର ଇୟତ୍ତା ନାହିଁ ।

ତା ପରଦିନ ...

ଆଜ ଦୀନା ଆସିବ, ହେନାର ହୃଦୟରେ ପୁଲକ, ମନରେ ସ୍ୱପ୍ନିଳ କଳ୍ପନା । କେତେ ଯତ୍ନରେ ରୋଷେଇ କରିଛି, କିନ୍ତୁ କେଜାଣି କାହିଁକି ତାର ଆଜ ସବୁକିଛି ଭୁଲ ହୋଇ ଯାଉଛି । ତେଲ ସ୍ଥାନରେ ଲୁଣ, ଲୁଣ ସ୍ଥାନରେ ମସଲା ରଖି ପକାଉଛି । ନିଜକୁ ବେଶ୍ ସୁନ୍ଦର କରି ସଜାଇଛି । ଆଖିରେ କଜ୍ଜଳ ଗାର, କବରୀରେ ବେନାମୀ ଫୁଲର ସ୍ତବକ । ଅଣିକଥା ଡ୍ରେସିଂ ଆଇନାରେ ବାରମ୍ବାର ମୁହଁ ଦେଖିବା ବେଳେ ତାର ମନେ ହେଉଥିଲା ଆହୁରି ଅନେକ କିଛି ବାକି ରହିଗଲା ।

ରାତି ଦୁଇଘଡ଼ି...

ବୁଢ଼ୀ ବାରଣ୍ଡାରେ ବସି ଢୁଳାଉଛି । ଆଉ ହେନା ? କୌଣସି-ଥିରେ ତାର ମନ ଲାଗୁ ନାହିଁ-ଘରୁ ବାହାରକୁ, ଆଉ ବାହାରୁ ଘରକୁ ହେଉଛି । ରାତି ଗଭୀର ହେଉଥିଲା । ହେନା ଅଧିକରୁ ଅଧିକ ଅଧୀର ହୋଇ ପଡୁଥିଲା । ଏତେବେଳ ପର୍ଯ୍ୟନ୍ତ ଦୀନା ଆସୁନାହିଁ କାହିଁକି ? ବାତାୟନ ପଥେ ଚାହିଁ ରହିଲା ସେ ଦୀର୍ଘ ଅପ୍ରଶସ୍ତ ସଡ଼କକୁ । ହଠାତ୍ ଦୂରରୁ ଦେଖାଗଲା ଗୋଟିଏ ତେଜୀୟାନ ଆଲୋକ ହେନାର ବୁଝିବାକୁ ବାକି ରହିଲାନି, ମୋଟର ସାଇକେଲରେ କୁଲି ସର୍ଦ୍ଦାର ଆସୁଛି । ବହୁବାର ସେ ପଛ ସିଟ୍‌ରେ ଲୋକଙ୍କୁ ବସାଇ ଆଣେ । ଦୀନାକୁ ନିଶ୍ଚୟ ସାଙ୍ଗରେ ଆଣୁଥିବ ।

କୁଲି ସର୍ଦ୍ଦାରର ମୋଟର ସାଇକେଲ ହେନାର ଘର ଆଡ଼କୁ ଆସୁଛି । ହେନାର ଆନନ୍ଦ କହିଲେ ନ ସରେ । ଦୀନା ଆସୁଛି... ତାର ଦୀନା ଆସୁଛି । ସେ କିନ୍ତୁ କେବେ ଆଗେ କଥା କହିବନି ।

Digitized by srujanika@gmail.com

ଢୀନା ବୁଝିବ ସେ ଅଭିମାନ କରିଛି । ତା'ପରେ, ଧୀରେ ଧୀରେ ତା ନିକଟକୁ ଆଗେଇ ଆସିବ, ଆଦରରେ ତାକୁ ଉଡ଼ ନେବ ତାର ଛାତି ଉପରକୁ ।

ହେବନାର ଘର ସମ୍ମ ଖରେ ଛିଡ଼ା ହୋଇଗଲା କୁଲି ସର୍ଦ୍ଦାରର ମୋଟର ସାଇକେଲ । ଚମକି ପଡ଼ିଲା ହେନା । କୁଲି ସର୍ଦ୍ଦାର ଏକା ଆସିଛି । ମୋଟର ସାଇକେଲ୍‌ର ଶବ୍ଦ ଶୁଣି ଆଖ ପାଖ ଘରର ସମସ୍ତେ ଆସି ଜମା ହୋଇଗଲେ । ଢୀନାର ମା, ତାର ତନ୍ଦ୍ରାଳୁ ଚକ୍ଷୁ ଦୁଇଟିକୁ ବହୁ କଷ୍ଟରେ ଆପ୍ତୃତ କରି କାନ୍ଦୁଥିଲା ଆଜିକା ଛିଡ଼ା ହେଲା ! କିନ୍ତୁ ଏ ଯେ କୁଲି ସର୍ଦ୍ଦାର । ତାର ଢୀନା କାହିଁ ??? କୁଲି ସର୍ଦ୍ଦାର ନୀରବ କାହିଁକି ?

ସମସ୍ତଙ୍କ ଉପରୁ ଦୃଷ୍ଟି ବୁଲାଇ ଆଣି ଦୀର୍ଘ ନିଃଶ୍ୱାସ ପକାଇ କହିଲା କୁଲି ସର୍ଦ୍ଦାର···"ଟ୍ରେନ୍ ଛିଡ଼ା ହେବା ଆଗରୁ ଓହ୍ଲାଇ ପଡ଼ିବା ବେଳେ ଢୀନା ଟ୍ରେନରୁ ଖସି ମରିଯାଇଛି···

ସଙ୍ଗେ ସଙ୍ଗେ ବୁଢ଼ୀ କମ୍ପିତ ହୋଇ ପଡ଼ିଲା । ଆଉ ତେଣେ ଘର ଭିତରେ ଶୁଭିଲା ଆଉ ଗୋଟିଏ ଶବ୍ଦ-"ଦୁମ୍ ।"

ପ୍ରଜ୍ୱଳମାଣ କ୍ଷୀଣ ଦୀପ ଶିଖାଟି ଦପ୍ କରି ଲିଭିଯାଇ ରାତିର କଳା ଯବନିକାକୁ ଆହୁରି କଳା କରିଦେଲା ।



Digitized by srujanika@gmail.com

# ନିୟତିର ରଥଚକ୍ର ତଳେ

ଦୂର ଦିଗ୍‌ବଳୟରେ ଗୋଲପି ଆଭା···ବୃକ୍ଷଲତା ତା'ର ଚମ୍ପନରେ ରଙ୍ଗୀନ୍ ହୋଇ ଉଠୁଥିଲ । ଶୀତଳ ପବନ ବହୁଥିଲା ସୁଲୁ ସୁଲୁ କରି, ଆଉ ତାର ସାଥିରେ ଭସି ଆସୁଥିଲ ଶେଫାଳୀର ସୁରଭି । ଶର ନବୀନା ଏହି ପ୍ରକୃତି । ତା'ର ସୁନ୍ଦର ରୂପରେ ଆତ୍ମହରା ହୋଇ ପଡ଼ିଥିଲେ ପୃଥିବୀର ଆଦି ପୁରୁଷ ଓ ଆଦି ନାରୀ ଆଦାମ୍ ଓ ଇଭ । ପୁଣି ଏହି ବିଂଶ ଶତାବ୍ଦୀରେ ମଧ୍ୟ ପ୍ରକୃତିର ପ୍ରତିଦ୍ୱନ୍ଦୀ ବୈଜ୍ଞାନିକ୍ କ୍ଷଣିକ ସକାଶେ ତାର ମନଲୋଭା ବେଶ ଦେଖି ଆତ୍ମବିସ୍ମୃତ ହୋଇପଡ଼େ । ପୂର୍ବଦିଗର ଝରକାଟି ଖୋଲି ଉପଭୋଗ କରୁଥିଲି ପ୍ରକୃତିର ରୂପ ମାଧୁରୀ । ଠିକ୍ ଏହି ସମୟରେ ବାହାରୁ ଶୁଭିଲା କା'ର କରୁଣ ଚିତ୍କାର—

"ମୁଁ ପାଗଳ ନୁହେ ଭାଇ, ପାଗଳ ନୁହେଁ । ମୁଁ ତୁମର ପରି ଜଣେ ମଣିଷ । ଲୋକେ ପଥରରେ ମୋତେ ଏମିତି ନିଷ୍ଠୁର ଭାବରେ ଖୁନ୍ କରି ପକାଉଛନ୍ତି···"

ତରତର ହୋଇ ରୁମରୁ ବାହାରି ଆସି ଚମକି ପଡ଼ିଲି ମୁଁ । ୪୦ । ୪୫ ବର୍ଷର ଲୋକ । ମଳିନ ଜୀର୍ଣ୍ଣ ବେଶ ପୋଷାକ । କୋଟର-ଗତ ଚକ୍ଷୁ । ମୁଣ୍ଡର ଅଲରା ବାଳ ଭେଦି ବାହାରି ପଡ଼ୁଛି ତାଜା ରକ୍ତର ଧାରା । ଲୋକଟି ପ୍ରତି ସହାନୁଭୂତିରେ, ଅନ୍ତର ପ୍ରାଣ ଉଠିଲା । ରୁମ୍ ଭିତରକୁ ଡ଼ାକି ଆଣିଲି । ପାଖ ଘରେ ଥିଲେ ମୋର ସ୍ତ୍ରୀ

Digitized by srujanika@gmail.com

ସବିତା । ମୋ ନିର୍ଦ୍ଦେଶମତେ କ୍ଷତ ସ୍ଥାନକୁ ବ୍ୟାଣ୍ଡେଜ୍ କରିଦେଲେ ସେ । ତାଙ୍କର କୋମଳ ହାତ ଦୁଇଟି ମଝିରେ ମଝିରେ ଥରି ଉଠୁଥିଲା । ଲୋକଟି ରୁମ୍ ମଝିରେ ଚେୟାର୍ ଉପରେ ବସିଥିଲା । ଉପରେ ଖୁବ୍ ବେଗରେ ଘୁରୁଥିଲା ବୈଦ୍ୟୁତିକ ପଙ୍ଖା···ମାନବ ପ୍ରଗତିକୁ ବିଜ୍ଞାନର ଦାନ । ଏ ଭିତରେ ସବିତା ଲୋକଟିକୁ ଗୋଟିଏ ଥାଳରେ କିଛି ଖାଇବାକୁ ଆଣିଦେଇ ସାରିଥାନ୍ତି । କୁମାରୀ ହିଆ ବଡ କୋମଳ । ତାଙ୍କ କୋମଳ ହୃଦୟରେ ଦରଦ ଜାଗିଛି । ତାଙ୍କ ଛଳ ଛଳ ଆଖିପ୍ରାନ୍ତ ଦୃଷ୍ଟି ପକାଇ ଲୋକଟିକୁ ଉଦ୍ଦେଶ୍ୟ କରି କହିଲେ,—“ତୁମେ ଖୁବ୍ କ୍ଳାନ୍ତ ଦେଖାଯାଉଛ । ଖାଇଦିଅ । ଟିକେ ସୁସ୍ଥ ଅନୁଭବ କରିବ ।” ମୁହଁ ଟେକି ସେ ଚାହିଁଲା । ସେ ଚାହାଣୀ କି କରୁଣ ! କ’ଣ ଯେପରି କହିବାକୁ ଯାଉଥିଲା । କିନ୍ତୁ ପାରିଲାନି । କେବଳ ଆଖିରୁ ଝରି ପଡିଲା ଦି’ଠୋପା ଲୁହ । ସବିତାର ଅନୁରୋଧ ଏଡି ନ ପାରି ସେ ଖାଇବାକୁ ଆରମ୍ଭ କଲା । ବାହ୍ୟ ସମସ୍ତ ଲୋକଟିକୁ ଅନାଇ-ଲିରୁ ମନେହେଲା ସତେ ଯେପରି ପୁଞ୍ଜିଭୂତ ଦାରିଦ୍ର୍ୟର ଅନ୍ତରାଳରେ ଲୁଚିଥିବା ସୁଖ ଆଭିଜାତ୍ୟ ଉଙ୍କି ମାରୁଛି ।

ଲୋକଟି ଖାଇସାରି ସସ୍ନେହ ଦୃଷ୍ଟିରେ ଆମ ଆଡକୁ ଅନାଇଲା । ସେତେବେଳକୁ ସବିତା ଆସି ମୋ ପାଖରେ ବସିଥାନ୍ତି । ଲୋକଟିକୁ ଟିକେ ସୁସ୍ଥ ଅନୁଭବ କରିବା ଦେଖି ପଚାରିଲି, “ତୁମେ କେଉଁଦିନୁ ସବୁଦିନେ ଏପରି ଗରିବ ?”

“ନା ବାବୁ, ମୁଁ ସବୁଦିନେ ଗରିବ ନ ଥିଲି । ମୁଁ ଜଣେ ଟ୍ରେଣ୍ଡ୍ ଗ୍ରେଜୁଏଟ୍ । ଭଲ ଚାକିରିଟିଏ କରୁଥିଲି । ପରିବାର ମଧ୍ୟରେ ମୋର ସ୍ତ୍ରୀ ଓ ଏକମାତ୍ର କନ୍ୟା ଗୀତା । ବଡ଼ ଆନନ୍ଦରେ ଦିନ କଟି ଯାଉଥିଲା । ଆମ ଘର ପାଖରେ ରୁଦ୍ରବାବୁ ବୋଲି ଜଣେ ଲୋକ ଥିଲେ । ସେ ମୋର ଅନ୍ତରଙ୍ଗ ବନ୍ଧୁ । ତାଙ୍କ ମୃତ୍ୟୁରେ ତାଙ୍କ

Digitized by srujanika@gmail.com

ଏକମାତ୍ର ପୁତ୍ର ରଜତ୍‌କୁ କୋଳରେ ନେଲି । ପିତାର ମୃତ୍ୟୁର କଷ୍ଟ ଯେପରି ସେ ଜାଣି ନ ପାରିବ ସେଥିପାଇଁ ମୁଁ ଗୀତାଠାରୁ ମଧ୍ୟ ତାକୁ ଅଧିକ ସ୍ନେହ କରୁଥିଲି । ସେ ଦୁହେଁ ମଧ୍ୟ ଦୁହିଁଙ୍କୁ ବଡ଼ ଭଲ ପାଉଥିଲେ । ଆଉ ସେମାନଙ୍କୁ ନେଇ ଆମେ ପତି ପତ୍ନୀ ମଧ୍ୟ ସୁଖ ସ୍ୱପ୍ନ ଦେଖୁଥିଲୁ । ଭାବୁଥିଲୁ ରଜତର ହାତରେ ଗୀତାକୁ ଅର୍ପଣ କରି ଶେଷ ଜୀବନଟି ସେମାନଙ୍କ ସୁନ୍ଦର ସଂସାର ଦେଖି ଆନନ୍ଦରେ କଟାଇ ଦେବୁ । କିନ୍ତୁ ମଣିଷ ପାଞ୍ଚିଲା କଥା ସବୁବେଳେ ସମ୍ଭବ ହୁଏ ନାହିଁ । ପ୍ରଥମ ମୋର ସୁଖର ସଂସାର ଉପରେ ଦେଖାଦେଲା ଅଦିନଆ ଝଡ଼ । ହଠାତ୍ ଦିନେ ମୋର ସ୍ତ୍ରୀ କଲେରାରେ ଆକ୍ରାନ୍ତ ହେଲେ । ନ ଖାଇ ନ ପିଇ ତିନଦିନ ତାଙ୍କର ସେବାରେ ଲାଗିଲୁଁ । ହେଲେ ପାରିଲୁନି..."

ଲୋକଟିର ଗଳା ଥରି ଉଠିଲା, ଆଖି ଦୁଇଟି ଛଳ ଛଳ ହୋଇ ଉଠିଲା । ଟିକଏ ରହି ପୁଣି ଆରମ୍ଭ କଲା—

"ମାୟାର ବନ୍ଧନ ଛିଡ଼ାଇ ଚାଲିଗଲେ ସେ । ବୁକୁଫଟା କ୍ରନ୍ଦନର ରୋଳରେ ଘର ଉଚ୍ଛୁଳି ପଡ଼ୁଥାଏ । ହଠାତ୍ ଗୃହଦ୍ୱାରରେ ଶୁଭିଲା ଭୀଷଣ ଚିତ୍କାର—'ଭାଗୋ—ଭାଗୋ...' ପତ୍ନୀର ମୃତ୍ୟୁଶଯ୍ୟା ପାଖରୁ ଉଠି ବାହାରକୁ ଆସିଲି । ଦେଖିଲି ଘରଦ୍ୱାର ଛାଡ଼ି ସମସ୍ତେ ପ୍ରାଣ ବିକଳରେ ଦୌଡ଼ି ପଳାଉଛନ୍ତି । ବଡ଼ କଷ୍ଟରେ ଜାଣିଲି ହିନ୍ଦୁସ୍ଥାନ ଦ୍ୱିଖଣ୍ଡିତ ହେଲା । ଆମ ଘରଦ୍ୱାର ପାକିସ୍ଥାନରେ, ଏଣୁ ମୁସଲମାନ ଗୁଣ୍ଡାମାନେ ଘରେ ଘରେ ପଶି ଅମାନୁଷିକ ଅତ୍ୟାଚାର କରୁଅଛନ୍ତି । ଧନ ସମ୍ପଦ ଲୁଣ୍ଠନ, ସର୍ବୋପରି ନାରୀ ଉପରେ ଯେଉଁ ଅତ୍ୟାଚାର ସେ ସବୁ କଥା ମନେ ପଡ଼ିଲେ ଏବେ ବି ଶରୀର ଶିହରି ଉଠେ । ସନ୍ତାନର ରକ୍ତରେ ଭାରତମାତାର ଅଙ୍ଗ ସିକ୍ତ ହେଲା । କିଂକର୍ତ୍ତବ୍ୟ-ବିମୂଢ଼ ହୋଇ କିଛିକ୍ଷଣ କାନ୍ଥରେ ଆଉଜି ଛିଡ଼ାହେଲି । ଏକ ହାତରେ ଜୀବନ ନେଇ ଫେରୁ ନଦୀ ନେଇ ଫେରୁଲା, ଅପର ହାତରେ ପ୍ରିୟତମା ପତ୍ନୀର ମୃତଦେହ

Digitized by srujanika@gmail.com

ସଙ୍କାର । କ'ଣ କରିବି ଭାବୁଥାଏ, ଠିକ୍ ସେହି ସମୟରେ ଶୁଣିବାକୁ ପାଇଲି ଅବଳା କଣ୍ଠର ଆର୍ତ୍ତ ଚିତ୍କାର, 'ମୋର ସବୁ ନିଅ ବାବୁ, କିନ୍ତୁ ମୋର ସନ୍ତାନଟିକୁ ହତ୍ୟା କରନି...' ତା ପରେ ଦେଖିଲି ପାଖ ଘରେ ହଠାତ୍ ନିଆଁ ଜଳି ଉଠିଲା । ପବନରେ ପେଟ୍ରୋଲ୍‌ର ଗନ୍ଧ ସଙ୍ଗେ ସଙ୍ଗେ ଭାସି ଆସୁଥିଲା ମୁସଲମାନ ଗୁଣ୍ଡାର ବିକଟ ଅଟ୍ଟହାସ୍ୟ- 'ଶାଲା, କାହାଁ ଭାଗ୍‌ତେ ହୋ !' ଏ ଅନ୍ୟାୟ ବିରୁଦ୍ଧରେ ହୃଦୟର ପ୍ରତି ରକ୍ତବିନ୍ଦୁ ପ୍ରତିବାଦ କରି ଉଠିଲା । କିନ୍ତୁ ନିରୁପାୟ । ସେମାନେ ହଜାର ହଜାର । ବାଧ ହୋଇ ଭଜନ୍ ଓ ଗୀତାକୁ ଧରି ଚନ୍ଦ୍ରୀର ମୃତ୍ୟୁଶଯ୍ୟା ଆଡ଼େ ଥରେ ମଧ୍ୟ ନ ଚାହିଁ କିଷ୍ଟୁର ଦେଇ ଚାଲିଆସିଲି ।"

ଲୋକଟିର କଣ୍ଠ ଥରି ଉଠିଲା । ଟିକିଏ ରହି ପୁଣି ଆରମ୍ଭ କଲା, "ଦିନ ନାହିଁ, ରାତି ନାହିଁ, ଖରା ନାହିଁ, ବର୍ଷା ନାହିଁ, କେତେ ଯେ ଚାଲିଚୁ ତାର ଇୟତ୍ତା ନାହିଁ । କ୍ଷୁଧାରେ ପେଟ ଜଳୁଥାଏ । ତଥାପି ଚାଲିଥାଉ । ଶେଷକୁ ଯେତେବେଳେ ଅବସନ୍ନ ଶରୀରରେ ହିନ୍ଦୁସ୍ଥାନ ସୀମାରେ ପହଞ୍ଚିଲୁ ସେତେବେଳେ ଆମର ଆନନ୍ଦର ସୀମା ନ ଥାଏ । ବଡ଼ ବଡ଼ ମଇଦାନ୍ ଉପରେ ଉଡ଼ୁଥାଏ ଚକ୍ର ଚିହ୍ନିତ ତ୍ରିରଙ୍ଗୀ । ଦୁଇ ହାତ ଯୋଡ଼ି ନଗ୍ନପଦରେ ଜାତୀୟ ପତାକାକୁ ପ୍ରଣାମ କଲୁ । ସେହି ଦିନଠାରୁ ଆମେ ଶରଣାର୍ଥୀ ନାମରେ ନାମିତ ହେଲୁ । କ୍ୟାମ୍ପ୍ ଇନ୍‌ଚାର୍ଜ ଆମକୁ ଖଣ୍ଡିଏ କାର୍ଡ଼ ଦେଇଥାଏ । ସେହି କାର୍ଡ଼ ଖଣ୍ଡିକ ଦେଖାଇଲେ ଦୁଇ ଓଳି ଦି'ଥର ଖାଇବାକୁ ମିଳେ । ଦିନେ ଆମର ଅବସ୍ଥା ଦେଖିବାକୁ ଜଣେ ନେତା ଆସିଲେ । ତାଙ୍କର ଭାଷଣରୁ ବୁଝିଲୁଁ ଯେ ଆମର ଦୁର୍ଦ୍ଦଶା ଦେଖି ତାଙ୍କ ଆଖିର ପାଣି ଆଉ ବାଧ ମାନୁନି ଆମକୁ ଉପଯୁକ୍ତ କାର୍ଯ୍ୟରେ ଲଗାଇବାର ଆଶା ଦେଇ ସେଦିନ ସେ ଚାଲି ଗଲେ । କିଛିଦିନ ପରେ ଜଣେ ଅଫିସର୍ ଆସି ଆମ୍ଭମାନଙ୍କର ନାମ ଲେଖିନେଲେ । ମୁଁ ଜଣେ କ୍ରେଣ୍ଡ୍ ଟ୍ରେଜ୍ଣ୍ଡ଼ଟ୍ ଶୁଣି ସେ ମୋ ସହିତ

Digitized by srujanika@gmail.com

କରମର୍ଦ୍ଦନ କଲେ । ମୋ ପାଖରେ ଚଉକିକୁ ମୁହଁ କରି ଛିଡ଼ା ହୋଇ-ଥିଲା ଗୀତା । ଗୀତା ଆଡ଼େ ଅନାଇ ସେ ପଚାରିଲେ "ଏ କିଏ ଆପଣଙ୍କର ଆତ୍ମୀୟା ?" ମୁଁ କହିଲି, "ହଁ ସାର୍, ସେ ମୋର ଏକମାତ୍ର କନ୍ୟା ।' 'ସତେ ନା', କହି ସେ ଗୀତାର କୁଣ୍ଠା ସତ୍ତ୍ୱେ ତା ସହ ହ୍ୟାଣ୍ଡ ସେକ୍ କଲେ । ମୋତେ ଗୋଟିଏ ଭଲ ଚାକିରୀ ଯୋଗାଡ଼ କରି ଦେବାର ଆଶା ଦେଇ ସେ ଗଲେ ।

ଆମ ରହିବା ପାଇଁ ଖଣ୍ଡିଏ ଖଣ୍ଡିଏ ଘର ଦିଆଯାଇ ଥିଲା । ଉପରେ ଖଣ୍ଡିଏ ଖଣ୍ଡିଏ ଟିଣ । ନିତି ନାନା କଥାର ବାହାନା ନେଇ ଆସୁଥାନ୍ତି ସେହି ଅଫିସର । ଦିନେ ସେ ମୋତେ ଖଣ୍ଡିଏ ଚିଠି ଦେଇ କହିଲେ ଠିକଣା ସ୍ଥାନରେ ଚିଠିଟି ଦେଇ ପାରିଲେ ମୋର ଚାକିରୀ ହୋଇଯିବ । ସେତେବେଳକୁ ସଞ୍ଜ ହୋଇ ଆସୁଥାଏ । ତେବେ ସୁଦ୍ଧା ତାଙ୍କ ପରାମର୍ଶ ଅନୁସାରେ ରଜତ୍ ସହ ବାହାରିଲି । କିନ୍ତୁ ଠିକଣା ସ୍ଥାନରେ ଯାଇ ଦେଖିଲି ସେଠି ଚିଠିରେ ଲେଖା ଥିବା ନାମର କେହି ନାହାନ୍ତି । ବଡ଼ ଆଶ୍ଚର୍ଯ୍ୟ ଲାଗିଲା ମୋତେ । ମନକୁ ମନ ଭାବିଲି ତେବେ ଏ କିଏ ପ୍ରତାରଣା ? ପର ମୁହୂର୍ତ୍ତରେ କିପରି ଏକ ଦୁର୍ବଳତା ଅନୁଭବ କଲି । ହତାଶ ହୃଦୟରେ ରିଫ୍ୟୁଜି ବସ୍ତିରେ ପହଞ୍ଚିଲା ବେଳକୁ ରାତି ବହୁତ ହୋଇ ଯାଇଥାଏ । ଆମ ଘରକୁ ଯାଇ ମୁଁ ଚମକି ଉଠିଲି । ଚାରିଆଡ଼ ଅନ୍ଧାର···"

ଲୋକଟିର ଆଖି ଛଳ ଛଳ ହୋଇ ଆସିଲା । ପଞ୍ଜରା ଦୋହଲାଇ ଭିତରୁ ବାହାରିଲା ଏକ ଦୀର୍ଘଶ୍ୱାସ । ସେ ପୁଣି କହି ଚାଲିଲା, "ଦିଆସିଲିଏ ଆଲୁଅରେ ଦେଖିଲି ଘରେ କେହି ନାହିଁ । ଚମକି ଉଠିଲି । ହାତରୁ ଦିଆସିଲିଟି ପଡ଼ିଗଲା । ଉନ୍ମାଦ ପରି ରଜତ୍ ସହ ରିଫ୍ୟୁଜି ବସ୍ତିର ଚାରିଆଡ଼େ ଖୋଜି ବୁଲିଲୁ । କିନ୍ତୁ ଗୀତାର ସନ୍ଧାନ ମିଳିଲାନି । ଶେଷକୁ ଜଣେ ବୁଢ଼ା କହିଲା, "ଏ କିଏ ବାପ, ଗୀତା

Digitized by srujanika@gmail.com

ପର ଟେଣା ନିକଟକୁ ଗଲ । ଘଣ୍ଟାଏ ହେଲା । ମାଁ ସେହି ଲେଖା ବାବୁ ଆସି କହିଲେ ଯେ ତୋର କାମ ଠିକ୍ ହୋଇ ଯାଇଛି, ଘର ବି ମିଳିଯାଇଛି । ଏଣୁ ଗୀତାକୁ ସେ ତାଙ୍କ ମୋଟରରେ ତୁମ ପାଖକୁ ଯିବାକୁ ସଜ ହେବାକୁ କହିଲେ । ଘରେ ତ ସେପରି କିଛି ନ ଥିଲା । ସୂତା କଣା ଅଖଣ୍ଡଟି ଓ କମ୍ବଳଟି ଧରି ଗୀତା ଯାଇ ମୋଟରରେ ବସିଲା ।"

"ଆଉ ଅଧିକ ଶୁଣିବାକୁ ମୋର ଧୈର୍ଯ୍ୟ ନ ଥିଲା । ମୋର ମନେହେଲା ଯେପରି ପାଦ ତଳର ମାଟି ଧୀରେ ଧୀରେ ତଳକୁ ଖସି ଯାଉଛି । ମୁଁ ନିଜକୁ ସମ୍ଭାଳି ନ ପାରି ପଡ଼ିଗଲି । ମୋର ଯେତେବେଳେ ଚେତା ଆସିଲା ସେତେବେଳେ ଦେଖିଲି ସକାଳ ହୋଇଯାଇଛି । ରଜତ୍ ଧୀରେ ଧୀରେ ମୋର କପାଳରେ ହାତ ବୁଲାଉଛି । ଘଟଣାଟି ମୁଁ ଭଲରୂପେ ବୁଝିପାରିଲି ବାବୁ । କିନ୍ତୁ କିଛି କରି ପାରିଲି ନ । ଶହ ଶହ ଦରଖାସ୍ତ ଉପରକୁ ଲେଖିଛି କିନ୍ତୁ କିଛି ଫଳ ହେଲାନି । ଶତ ଚେଷ୍ଟା କରି ମଧ୍ୟ ସେ ଶପୂତାନ୍ ଅଫିସରଙ୍କ ଦେଖା ପାଇ ପାରିଲିନି । ଅପେକ୍ଷା କରିବାର ଧୈର୍ଯ୍ୟ ଆଉ ରହିଲାନି । ରଜତ୍ ସହ ଉଦ୍‌ଭ୍ରାନ୍ତ ପରି ଗାଁ ଗାଁ ଖୋଜି ବୁଲିଲୁ । କୌଣସିଠି ଗୀତାର ସନ୍ଧାନ ମିଳିଲାନି .. କେହିହେଲେ ଗୀତାର ଖବର ଦେଇ ପାରିଲେନି । ତଥାପି ଆମେ ଖୋଜି ବୁଲିଲୁ । ଦିନେ ବୁଲି ବୁଲି କ୍ଳାନ୍ତ ହୋଇ ଗୋଟିଏ ପୋଖରୀ ନିକଟରେ ପହଞ୍ଚିଲୁ । ଅକିଲା ପାଦକୁ ଆଉ ଆଗକୁ ଚାଲିବାର ଶକ୍ତି ନ ଥାଏ । କ୍ଷୁଧାର ଜ୍ୱାଳା ସହି ହେଉ ନ ଥାଏ । ଆକଣ୍ଠ ପାଣି ପିଇ ବରଗଛ ମୂଳେ ବସିଲୁଁ । ମୁଁ ଯେ କେତେବେଳେ ସେଇଠି ଶୋଇ ପଡ଼ିଲି ମୁଁ ଜାଣେନା । ଯେତେବେଳେ ନିଦ ଭାଙ୍ଗେ ସେତେବେଳେ ଦେଖିଲି ରାତି ପାହିଯାଇଛି । ଚାରିପାଖକୁ ଅନାଇ ଦେଖିଲି କେହି ନାହିଁ । ଚମକି ଉଠିଲି । ରଜତ ଲୁଚିଯାଇଛି । ପାଖରେ ମୋର

Digitized by srujanika@gmail.com

ପଡ଼ି ରହିଛି ଖଣ୍ଡିଏ ଚିଠି । ଚିଠିଟି ରଜତର । ଚିଠିରେ ସେ ମୋତେ ରିଫ୍ୟୁଜି ବସ୍ତିକୁ ଫେରିଯିବାକୁ ଅନୁରୋଧ କରିଥିଲା । ଲେଖିଥିଲା ଗୀତାର ଅନୁପସ୍ଥିତି ସେ ସହି ପାରୁନି । ଏଣୁ ନ ଶୋଇ ସେ ତା'ର ସନ୍ଧାନରେ ବାହାରିଲା । ସହରତର ଗଳି ଗଳି ଘୁରି ସେ ତାର ଖୋଜ ନେବ । ଗୀତା ଉପରେ ଅତ୍ୟାଚାର ସେ ସହି ପାରିବ ନାହିଁ । ଖୋଜି ଖୋଜି ଯଦି ଗୀତାର ସନ୍ଧାନ ନ ପାଏ ତେବେ ତାର ଦେଖା ମଧ୍ୟ ଆଉ ପାଇ ପାରିବନି । ଶେଷକୁ ସେ ମୋର ଏହି ଚରମ ଦୁର୍ଦ୍ଦିନରେ ମୋର ସେବା କରି ନ ପାରି କର୍ତ୍ତବ୍ୟର ଆହ୍ୱାନରେ ନ କହି ଚାଲି ଯାଇଥିବାରୁ କ୍ଷମା ପ୍ରାର୍ଥନା କରିଥିଲା ।

"ଚିଠିଟି ପଢ଼ି ମୁଣ୍ଡ ଘୁରିଗଲା । ବ୍ୟଥାରେ ଛାତି ଫାଟିଗଲା ପରି ଲାଗୁଥାଏ । ସାରା ବିଶ୍ୱରେ ମୋର ଆଉ କେହି ନାହିଁ । ମୁଁ ରିଫ୍ୟୁଜି, ମୁଁ ସର୍ବହରା-ଭିକାରୀ ବିଶ୍ୱରେ ନିଃସ୍ୱ ମୁଁ । ସାଥିରେ ମୋର କେହି ନାହିଁ । ମୋର ସବୁ ଥାଇ ମଧ୍ୟ ମୁଁ ସର୍ବହରା । ବୁକୁ ଭିତରୁ ଖାଲି କୋହ ଉଠୁଥାଏ । ତଥାପି ରିଫ୍ୟୁଜି ବସ୍ତିକୁ ଫେରିଯାଇ ପାରିଲିନି । ଆଖିର ଲୁହ, ଆଖିରେ ମାରି ପାଦ ବଢ଼ାଇଲି ଅନିର୍ଦ୍ଦିଷ୍ଟ ଯାତ୍ରା ପଥେ । ଦିନକର କଥା । ଗଙ୍ଗା କୂଳରେ ବସି ଭାବି ଚାଲୁଥିଲି ମୋର ଅଭିଶପ୍ତ ଜୀବନର କଥା । ସେତେବେଳକୁ ତପନର କ୍ଷୀଣ କିରଣ ଜହ୍ନବୀର ଲୀଳାମୟ ବକ୍ଷରେ କମ୍ପମାନ । ସମ୍ମିଳିତ କଣ୍ଠର କୋଳାହଳ ଶୁଣି ଫେରି ଦେଖେ ତ କିଛି ଦୂରରେ କେଜାଣି କାହିଁକି ବହୁ ଲୋକ ଜମା ହୋଇଛନ୍ତି । ଚାଲିବାର ଶକ୍ତି ନ ଥିଲା, ତଥାପି ମେସିନ୍ ଗଢ଼ା ପୁତ୍ତଳିକା ପରି ଆଗେଇ ଚାଲିଲି । ଗୋଟିଏ ଲାସ୍‌କୁ ନେଇ ଲୋକମାନେ ନାନା କଳନା ଜଳ୍ପନା କରୁଛନ୍ତି···"

ଲୋକଟିର କଥା ଅଟକି ଗଲା । ବାଁ ହାତରେ ଆଖି ପୋଛି ପୁଣି ଆରମ୍ଭ କଲା, "ମୃତ ବ୍ୟକ୍ତିର ମୁହଁକୁ ଚାହିଁ ମୁଁ ଆଉ ଠିଆ

Digitized by srujanika@gmail.com

ହୋଇ ଉଠୁ ପାରୁନି । ମୁଣ୍ଡ ମୋର ଘୁରିଗଲା—ସେ ରଜତ୍ । ଛାତିରୁ ତା'ର ରକ୍ତ ବାହାରି ଲୁଗାପଟା ଫଗୁ ଖେଳିଲା ପରି ଲାଲ ହୋଇ ଯାଇଛି । ପଥର ପରି ସେଠାରେ ବସି ରହିଲି । ପୋଲିସ୍ ଆସି ଲାସ୍ ନେଇଗଲେ । ଜଣ ଜଣ କରି ଯାତ୍ରୀମାନେ ଚାଲିଗଲେ । ମୁଁ କିନ୍ତୁ ସେଠି ପାଷାଣ ପରି ବସି ରହିଲି । ସ୍ମୃତିପଟ କେବଳ ରଜତ୍‌ମୟ ଦେଖାଗଲା । ଗୀତାର ପାଇଁ ସେ ଆତ୍ମବଳି ଦେଇଛି । ପିତୃମାତୃହୀନ ରଜତକୁ ପାଳନ କରିଥିଲି କିନ୍ତୁ ମଲାପୂର୍ବରୁ ଥରେ ତାକୁ ଦେଖି ପାରିଲିନି ବାବୁ । ସେହି ଦିନଠାରୁ ଏ ଅନ୍ୟାୟ ଓ ଅତ୍ୟାଚାରର ବିରୁଦ୍ଧରେ ଭଗବାନଙ୍କଠାରେ କେତେ ଗୁହାରି କରିଛି । କିନ୍ତୁ ଅନ୍ଧ ଦୁନିଆଁ ପରି ଭଗବାନ ମଧ୍ୟ...”

କହୁଁ କହୁଁ ହୋଇ ଲୋକଟି କାନ୍ଦି ଉଠିଲା । ମୋରି ଅଜାଣତରେ ଆଖିରୁ ଦି'ଟୋପା ଲୁହ ଝରି ପଡ଼ିଲା । ସବିତାଙ୍କ ଆଡ଼େ ଅନାଇଁ ଦେଖିଲି ପଣତ କାନିରେ ସେ ପୋଛୁଥିଲେ ତାଙ୍କର ଅଶ୍ରୁଳ ଆଖିପତା । ଆଖିର ଏହି ଦିଟୋପା ଲୁହ ଛଡ଼ା ଲୋକଟି ପାଇଁ କିଛି ଦେବାକୁ ଆମର ନ ଥିଲା । ବୁକୁ ଭିତରେ ତା'ର ଅସହ୍ୟ ବେଦନାର ପ୍ଲାବନ ! ନିୟତିର ରଥଚକ୍ର ତଳେ ତାର କଳ୍ପନାର ମିନାର ଚୂର୍ଣ୍ଣ ହୋଇ ଯାଇଛି । ସେ ତାକୁ ଆଉ ସଜାଡ଼ି ପାରିବନି...



Digitized by srujanika@gmail.com

# ତା' ପରେ···

ନୀଳ ବିଦ୍ୟୁତାଲୋକର ବନ୍ୟା ଭିତରେ ଘୁମନ୍ତ କପୋତଟି ସ୍ୱପ୍ନ ଦେଖୁଥିଲା···ମଧୁର ସ୍ୱପ୍ନ । କେତେ ପଥ ଅତିକ୍ରମ କରି, କେତେ କଷ୍ଟରେ ପହଞ୍ଚିଛି ସେ ତା'ର ନୀଡ଼କୁ । ଆଖିରେ ଆନନ୍ଦାଶ୍ରୁ, ହୃଦୟରେ ଗଭୀର ଉତ୍କଣ୍ଠା । ଇସ୍, ବାପା ମା ତାର କେତେ ଶୁଖି ଯାଇଛନ୍ତି !!! ଖାଲି ତାର ପାଇଁ ଭାବି ଭାବି ସିନା । ଶୋଇ ପଡ଼ିଛନ୍ତି କି ? ନା, ନା, ଆଖିବୁଜି ତାର କଥା ଭାବୁଛନ୍ତି ବୋଧହୁଏ । ସେଥିପାଇଁ ଆଖି କୋଣରେ ଗଭୀର ବେଦନାର ଅଶ୍ରାନ୍ତ ଉଚ୍ଛ୍ୱାସ । ହୃଦୟର ଆବେଗକୁ ସମ୍ଭାଳି ନ ପାରି କପୋତଟି ଚିତ୍କାର କରି ଉଠିଲା···"ମା!!!"·

ସ୍ୱପ୍ନ ଭାଙ୍ଗିଗଲା···

ବାହାରେ ଝଡ଼ର ସିଂହନାଦ···

ସ୍ୱପ୍ନର ସାଥିରେ ଅଦୃଶ୍ୟ ହୋଇଗଲା ଶତସ୍ମୃତି ବିଜଡ଼ିତ ସେହି ନୀଡ଼ । ମନକୋଣରେ କେବଳ ରହି ଯାଇଛି ତା'ର ଅଲିଭା ଦାଗ । ପୁଣି ଥରେ ଚାରିଆଡ଼େ ବୃଥାରେ ଆଖି ବୁଲାଇଲା କପୋତଟି-ନା, କେହି ନାହିଁ । ତାକୁ ଆବଦ୍ଧ କରି ରଖିଥିବା ପିଞ୍ଜରାଟି ନିର୍ମମ ଉପହାସ କରି ଉଠୁଥିଲା ସତେ ଯେପରି । ପୁଣି ଥରେ ଶୋଇବାର ନିଷ୍ଫଳ ପ୍ରୟାସ କଲା ସେ । ତଥାପି ଆଖି ବୁଜି ଅତୀତକୁ ଭାବିବାକୁ କେଜାଣି କାହିଁକି ତାକୁ ଖୁବ ଭଲ ଲାଗୁଥିଲା ସେତେବେଳେ । ଏହି ସମୟରେ ଶୁଭିଲା କାହାର ଡେଣାପିଟାର ଶବ୍ଦ-ଫଡ଼୍,ଫଡ଼୍,ଫଡ଼୍···

"କିଏ ?" ପିଞ୍ଜରାବଦ୍ଧ କପୋତଟି ବିରକ୍ତ ହୋଇ ଚିତ୍କାର କରି ଉଠିଲା; କିନ୍ତୁ କୌଣସି ଉତ୍ତର ମିଳିଲା ନାହିଁ । କେବଳ ସେହି

Digitized by srujanika@gmail.com

ଶବ୍ଦ-ଫଡ୍,ଫଡ୍,ଫଡ୍··· ବଳନ୍ତ କୁକୁରଟି ଆଗନ୍ତୁକର ଉପସ୍ଥିତିକୁ ସହ୍ୟ କରି ନ ପାରି ଚିତ୍କାର କରି ଉଠିଲା···ଭୁ,ଭୁ,ଭୁ···

ଆଗନ୍ତୁକ ଉନ୍ମୀପ୍ସମାନ କପୋତଟି ପିଞ୍ଜରା ଉପରେ ବସି ପଡ଼ିଲା । ପିଞ୍ଜରା ଭିତରେ ଥିବା କପୋତଟି ଚାହିଁଲା···ଓଃ ସମଗୋତ୍ରୀ ! ବିଚରା ବୋଧହୁଏ ଝଡ଼ରେ ପଥ ଭୁଲି ଚାଲି ଆସିଛି । ସହାନୁଭୂତିରେ ଅନ୍ତର ପୂରି ଉଠିଲା । ସ୍ୱପ୍ନର ମାୟା ଏବେବି ମନରୁ ତାର ମରି ନ ଥିଲା । ଏଇମିତି ଝଡ଼ ରାତିରେ ଏକଦା ସେ ଘରି ଭୟ କରୁଥିଲା । ଆଖି ବୁଜି ମା'ର ବେକ ତଳେ ଆଉଜି ପଡ଼ୁଥିଲା ଧୀରେ, ଅତି ଧୀରେ । ପକ୍ଷୀଟିର ଚକ୍ଷୁଦ୍ୱୟ ପୁଣି ଥରେ ଲୋତକାର୍ଦ୍ର ହୋଇ ଉଠିଲା·

"ଏଇ ସ୍ଥାନ, ହଁ, ଠିକ୍ ଏଇ ସ୍ଥାନ···"ଆଗନ୍ତୁକ କପୋତଟି ପିଞ୍ଜରା ଉପରେ ବସି କହି ଉଠିଲା । ପିଞ୍ଜରାବଦ୍ଧ କପୋତର ଚିନ୍ତା-ସ୍ରୋତ ପୁଣି ଥରେ ବାଧାପ୍ରାପ୍ତ ହେଲା । ସମଗୋତ୍ରୀକୁ ସଚେତନ କରିବାକୁ ଯାଇ କହିଲା ସେ "ତୁମେ ପଥ ହୁଡ଼ି ଚାଲିଆସିଛ···"

"ନା,ମୋର ଭୁଲ ହୁଏନା···" ଆଗନ୍ତୁକ କପୋତର କଣ୍ଠ-ସ୍ୱରରେ ଦୃଢ଼ତା । ପିଞ୍ଜରାବଦ୍ଧ କପୋତଟି ରାଗରେ ଜଳି ଉଠିଲା । ପରକ୍ଷଣରେ ଆଗନ୍ତୁକକୁ ଉପହାସ କରିବା ପାଇଁ ପିଞ୍ଜରା ଭିତରେ ହସି ହସି ଗଡ଼ିଗଲା । ତାପରେ ବିଦ୍ରୂପ କରି କହିଲା, "ସେଇ ନାମ ଲେଖା ହୋଇଥିବା ଫଳକ ଆଡ଼କୁ ଥରେ ଚାହିଁ ଦେଖ । ଏ ଘର ବଶିଷ୍ଟ କଣ୍ଟ୍ରାକ୍ଟର ମିଷ୍ଟର ସିହ୍ନାଙ୍କର···

"ଚୁପ୍ କର, ତା ନାମ ଶୁଣିଲେ ମଧ୍ୟ ପାପ ହେବ । ସେ ମଣିଷ ନୁହେଁ-ମଣିଷର ଛଦ୍ମବେଶରେ ସେ ଏକ ପିଶାଚ···

"ପିଶାଚ !!!" ପିଞ୍ଜରାବଦ୍ଧ କପୋତଟି ଚମକି ଉଠିଲା ।

"ନୁହେଁତ ଆଉ କଅଣ ? ତାରି ଯୋଗୁ ଜଣେ ନିରୀହ ମଜଦୁରର ସୁନାର ସଂସାର ଚୂନା ହୋଇଗଲା । ଏଇ ମାଟି ତଳେ

Digitized by srujanika@gmail.com

ହସି ଉଠୁଥିଲା ତାର ଆନନ୍ଦରେ । ତାର ମାଟିର କୁଡ଼ିଆର ଧ୍ୱଂସସ୍ତୂପ ଉପରେ ଗଢ଼ି ଉଠିଛି ଆଜ ଏହି ନର ରାକ୍ଷସର ବିରାଟ ପ୍ରାସାଦ···

"ଏ ତୁମେ କଅଣ କହୁଛ···?"

ଯାହା ଏଇ ଆଖିରେ ଦେଖିଛି, ଯାହା ଏଇ ଅଙ୍ଗରେ ଭୋଗିଛି । ଅନତିଦୂରରେ ଏ ଯେଉଁ ଲୁଗାକଳ ବସିଛି, ତାର ଘର ନିର୍ମାଣ କାମ ଆରମ୍ଭ ହେଉଥିଲା ସେତେବେଳେ । ଏଇ ଶସ୍ତୁରାମ୍ ସେ ସବୁ କଣ୍ଟ୍ରାକ୍ଟ ନେଇଥାଏ । ସେ ସମୟରେ ଏଇ ମାଟିରେ ଥିଲା ଜଣେ ଗରିବ ମଜଦୁରର କୁଡ଼ିଆ । ନା'ଟାର ବାଦଲ । ସବୁ ତା'ର ସ୍ତ୍ରୀ ବ୍ୟଷ୍ଟିକ ଆଉ କେହି ନ ଥିଲେ । ଗରିବ ଘର ଝିଅ ଯେ ଏତେ ସୁନ୍ଦର ହୋଇ ପାରେ ବାଦଲର ସ୍ତ୍ରୀକୁ ନ ଦେଖିଲେ କେହି ତାହା ବିଶ୍ୱାସ କରି ପାରିବେ ନାହିଁ । ଅନ୍ୟାନ୍ୟ ମଜଦୁର ପରି ବାଦଲ ମଧ୍ୟ ସେହି କଣ୍ଟ୍ରାକ୍ଟରର ଅଧୀନରେ କାମ କଲା । ନିତି ୧୨ ଟା ବେଳେ ତାର ସ୍ତ୍ରୀ ଭାତ ନେଇଯାଏ ତାରି ପାଖକୁ । ଦିନେ ହଠାତ୍ ଏଇ କଣ୍ଟ୍ରାକ୍ଟରର ଦୃଷ୍ଟି ପଡ଼ିଲା ତାରି ଉପରେ । କ ଅଶୁଭ ଲଗ୍ନରେ ସେ ଦିନ ରାତି ପାହିଥିଲା କେଜାଣି···"

ଟିକଏ ରହି କପୋତଟି ପୁଣି ଆରମ୍ଭ କଲା, "ସେହି ଦିନଠାରୁ ନିତି ଏଇ କଣ୍ଟ୍ରାକ୍ଟରର ନାନା ଛଳନାରେ ବସ୍ତି ଭିତରକୁ ଆସି ବାଦଲ ଘର ଦୁଆରେ ଛିଡ଼ା ହୁଏ । ବାଦଲର ସ୍ତ୍ରୀ ନଦୀକୁ ଗାଧୋଇ ଗଲାବେଳେ ପଛେ ପଛେ ଗୀତ ଗାଇ ଯାଏ, ଉପରେ ପଡ଼ି କଥାହୁଏ ଓ ବିନା କାରଣରେ ଅର୍ଥମୟ ହସରେ ମୁହଁଟା ତାର ଭରିଯାଏ । କିନ୍ତୁ ତାର ସମସ୍ତ ଉଦ୍ୟମ ପଣ୍ଡ ହେଲା । ଗରିବ ହେଲେ ବି' ବାଦଲର ସ୍ତ୍ରୀ ବୁଝିଥିଲା ଇଜ୍ଜତ ତାର ସବୁ କିଛି; ତଥାପି କଣ୍ଟ୍ରାକ୍ଟର ନିରାଶ ହେଲା ନାହିଁ । ଦିନେ କେତେକ ଜିନିଷ କିଣିବା ପାଇଁ ଦୂରବର୍ତ୍ତୀ ସହରକୁ ସେ ବାଦଲକୁ ପଠାଇଲା । ଅନିଚ୍ଛା ସତ୍ତ୍ୱେ ବାଦଲ 'ନାହିଁ' କରି ପାରିଲାନି ।

Digitized by srujanika@gmail.com

କିନ୍ତୁ ଦିନକ ପରେ ଯେତେବେଳେ ସେ ସହରରୁ ଫେରି ଆସିଲା ସେତେବେଳେ ଘର ତାର ଖାଲି···ବାଦଲର ମୁଣ୍ଡ ଘୁରିଗଲା । କିଏ କେତେପ୍ରକାର କଳ୍ପନା ଜଳ୍ପନା କଲେ, କିନ୍ତୁ ସତକଥା ବୁଝିବାପାଇଁ ବାଦଲକୁ ବେଶି ସମୟ ଲାଗିଲା ନାହିଁ । ସେ ଜାଣି ପାରିଲା-ଏତେ ଦିନ ଧରି ତାର ସ୍ତ୍ରୀର ଅଭିଯୋଗକୁ ହସି ହସି ଉଡ଼ାଇ ଦେଇ ସେ ବହୁତ ଭୁଲ କରିଛି, ଯେଉଁ ଭୁଲକୁ ସେ ଆଜି ସଂଶୋଧନ କରି ପାରିବନି ସେହିଦିନ ଠାରୁ ଖିଆ ପିଆ ପ୍ରାୟ ଛାଡି ଦେଲା ସେ । ଯେଉଁଠାରେ ବସିଥାଏ, କେବଳ ବସି ରହିଥାଏ, ଆକାଶ ଆଡକୁ ଚାହିଁ କେତେ କ'ଣ ଭାବି ଚାଲିଥାଏ । ତାପରେ, ତାପରେ ହଠାତ୍ ଛୋଟ ଶିଶୁଟି ପରି କଇଁ କଇଁ ହୋଇ କାନ୍ଦି ଉଠେ ।

ଦିନକର କଥା, ସନ୍ଧ୍ୟା ସେତେବେଳକୁ ଆସନ୍ନ ପ୍ରାୟ ବାଦଲ ଧୀରେ ଧୀରେ ମୋ ପାଖକୁ ଆଗେଇ ଆସିଲା । ତାପରେ ପିଞ୍ଜରା ଖୋଲି ଦେଇ କହିଲା···"ଉଡଯା, ଉଡ଼ଯା' ଧନ, ମୋ ଦୁଃଖରେ ତୁ କାହିଁକି ଅଂଶୀଦାର ହେବୁ ?" ପିଞ୍ଜରା ଭିତରୁ ଧୀରେ ଧୀରେ ବାହାରିଲି କିନ୍ତୁ ଯାଇ ପାରିଲିନି, ଆଖିରେ ମୋର ଲୁହ ଜମି ଆସିଥିଲା । ଉଡି-ଯାଇ ବାଦଲର କାନ୍ଧ ଉପରେ ବସିଲି । ସେ ଧୀରେ ଧୀରେ ମୋତେ ହାତରେ ଧରି ଚୁମ୍ବନ କଲା । ତା ଆଖିର ଲୁହରେ ମୋର ସର୍ବାଙ୍ଗ ସିକ୍ତ ହୋଇଗଲା, ତାପରେ ମୋତେ ଉଡ଼ାଇ ଦେଇ ଉନ୍ମାଦ ପରି ଘରୁ ବାହାରି ଗଲା । ମୁଁ କିନ୍ତୁ ତାରି ପଛେ ପଛେ ଉଡ଼ି ଉଡି ଗଲି ।

ଗୋଟିଏ ବରଗଛ ପାଖରେ ନଅଜଣ କେତେ ଜଣ ଲୋକ ସହିତ ବସି ଏଇ କଣ୍ଟ୍ରାକ୍ଟର କ'ଣ ସବୁ ପରାମର୍ଶ କରୁଥିଲା । ବାଦଲ ସେଠାରେ ପହଞ୍ଚି ଯାଇ ଉତ୍ତେଜିତ କଣ୍ଠରେ କହି ଉଠିଲା··· "କହ,କହ ଶୟତାନ୍ ମୋର ସ୍ତ୍ରୀକୁ କେଉଁଠାରେ ରଖିଛୁ, ନ ହେଲେ ନ ହେଲେ, ଏଇ ହାତରେ ଆଜି ତୋର ତଣ୍ଟି ଚିପି ··" ଅତ୍ୟଧିକ

Digitized by srujanika@gmail.com

କ୍ରୋଧରେ ସେ ଆଉ କିଛି କହି ପାରିଲାନି । ସର୍ବାଙ୍ଗ ତା'ର ଥରୁଥାଏ, କଣ୍ଟ୍ରାକ୍ଟରେ ଚମକି ଉଠିଲା, ଆଗେଇ ଯାଉଥିବା ବାଦଲକୁ ଧରି ପକାଇଲେ ତାର ଲୋକମାନେ···" ପକ୍ଷୀଟି ଚୁପ୍‌ହେଲା ।

"ଚୁପ୍ ରହିଲ ଯେ ?"

"ତା ପରେ, ଯା ହୁଏ, ଠିକ୍ ତାହାହିଁ ହେଲା । କଣ୍ଟ୍ରାକ୍ଟରକୁ ହତ୍ୟା କରିବାକୁ ଯାଉଥିବା ଅଭିଯୋଗରେ ବାଦଲକୁ ଜେଲ ଦଣ୍ଡ-ହେଲା । ଅଦାଲତରେ ମିଥ୍ୟା ସାକ୍ଷ୍ୟ ଦେବାପାଇଁ ଧନୀ କଣ୍ଟ୍ରାକ୍ଟରକୁ ଲୋକର ଅଭାବ ହେଲା ନାହିଁ । କଣ୍ଟ୍ରାକ୍ଟରର ଉକିଲ କହିଲେ-ବାଦଲ ଋଣ ନେଇଥିଲା ମି: ସିହ୍ନାଙ୍କଠାରୁ, ନିର୍ଦ୍ଧାରିତ ସମୟରେ ତାହା ଶୋଧ କରି ପାରିଲାନି ବାଦଲ ମିଃ ସିହ୍ନାଙ୍କ ସହିତ ସେ ବିଷୟ ନେଇ ବିନେ ଭୀଷଣ କଳହ ହେଲା । ଶେଷକୁ ଏଇ ବାଦଲ କଣ୍ଟ୍ରାକ୍ଟରକୁ ଖୁନ୍ କରିବାକୁ ଯାଉଥିଲା । ଭାଗ୍ୟକୁ ସେ ସମୟରେ ଅନତିଦୂରରେ ଥିବା ବ୍ୟକ୍ତିମାନେ ଘଟଣାସ୍ଥଳରେ ପହଞ୍ଚିଗଲେ ନ ହେଲେ ମିଃ ସିହ୍ନା··· ଆଉ ଏ ଜଗତରେ ନ ଥାନ୍ତେ···"

ଋଣ ନେଇଥିବା କଥା ଶୁଣି ଅଦାଲତରେ ବାଦଲ ଚିତ୍କାର କରି ଉଠିଲା··· "ମିଥ୍ୟା···ମିଥ୍ୟା କଥା ହଜୁର···" ସେ ଆହୁରି କ'ଣ କହିବାକୁ ଯାଉଥିଲା । କିନ୍ତୁ ପାଖରେ ଥିବା ପୁଲିସ ଇନ୍‌ସପେକ୍ଟରଙ୍କ ନାଲି ଚକ୍ଷୁ ଦେଖି ସେ ନୀରବ ହେବାକୁ ବାଧ୍ୟ ହେଲା ।" ମାଜିଷ୍ଟ୍ରେଟ ଚାହିଁବାରୁ କଣ୍ଟ୍ରାକ୍ଟରଙ୍କ ଉକିଲ ଦେଖାଇଲେ ଏକ କାଗଜ । ବାଦଲ ଆଶ୍ଚର୍ଯ୍ୟ ହେଲା- ସେଥିରେ ରହିଛି ଅବିକଳ ତାହାରି ଟିପ···ପର-କ୍ଷଣରେ ସେ ସବୁ ବୁଝି ପାରିଲା । ତା'ର ସ୍ତ୍ରୀ ହଜିବା ପରେ ପଡ଼ୋଶୀ ମଣିଲାଲ ଥାନାରେ ଏତଲା ଦେବା ପାଇଁ ତା'ଠାରୁ ଏହିପରି ଏକ ଧଳା କାଗଜରେ ଗୋଟିଏ ଟିପ ସହି ନେଇଥିଲା । କିନ୍ତୁ ମାଜିଷ୍ଟ୍ରେଟଙ୍କୁ ସେ କିଛି କହି ପାରିଲାନି...ଆଖିରୁ କେବଳ ବହୁଥିଲା ତାର ଅସରା ଲୋତକର ଧାର···"

Digitized by srujanika@gmail.com

"ତା' ପରେ ?"

"ତା' ପରେ ବାଦଲକୁ ହେଲା ପାଞ୍ଚ ବର୍ଷ ସଶ୍ରମ କାରାଦଣ୍ଡ । ନିଲାମରେ ତାର ଘର ପାଇଲା ଏଇ କଣ୍ଟ୍ରାକ୍ଟର ..."

"ବାଦଲ ବର୍ତ୍ତମାନ ତେବେ ଜେଲରେ ଅଛି ?"

"ନା, ତାର ଅତ୍ୟାଚାରିତ ଶରୀରକୁ ପ୍ରାଣ ପକ୍ଷୀ ଆଜି ଉଡ଼ି ପାଇଛି · କିନ୍ତୁ ତାର ଅତୃପ୍ତ ଆତ୍ମା ଏଇଠି ହୁଏତ ଘୂରି ବୁଲୁଥିବ..."

"ତୁମେ ଭୁଲ ଶୁଣିଛ, ବାଦଲର ସ୍ତ୍ରୀ ସତରେ ମିଷ୍ଟର ସିହ୍ନାଙ୍କ ପାଖରେ ନାହିଁ, କାରଣ ମୁଁ ମିସେସ୍ ସିହ୍ନାଙ୍କ ବ୍ୟତୀତ ଆଉ କୌଣସି ସ୍ତ୍ରୀ ଲୋକକୁ ଦେଖି ନାହିଁ ।

"ହଁ, ସେ ଏଠାରେ ନାହିଁ, ଆଜି ନୁହେଁ, ବହୁଦିନରୁ ସେ ଚାଲି ଯାଇଛି, ସେ ଆଉ କେବେ ଫେରିଆସିବନି । ସେତେବେଳକୁ ଏଇ ଦ୍ୱିତଳ ପ୍ରାସାଦ ନିର୍ମାଣ ହୋଇ ନ ଥିଲା । ଗୋଟିଏ ଘର ଭଡ଼ା ନେଇଥିଲା ଏଇ କଣ୍ଟ୍ରାକ୍ଟର । ସେହି ଘରର ଏକ କୋଠରୀରେ ବନ୍ଦିନୀ ଥିଲା ବାଦଲର ସ୍ତ୍ରୀ । କିନ୍ତୁ ଶୟତାନ କଣ୍ଟ୍ରାକ୍ଟରର ପାପ ଆଶା ଚରିତାର୍ଥ ହୋଇ ପାରିଲା ନାହିଁ । ବାଦଲର ସ୍ତ୍ରୀ ଉପରେ ଅତ୍ୟାଚାର କରିବାକୁ ଗଲାବେଳେ, ସେଠାରେ ବାଦଲର ସ୍ତ୍ରୀ ଆଉ ନ ଥିଲା...ଥିଲା ତାର ଶବ... ନିଜ ଲୁଗାରେ ଫାଶୀ ଦେଇ...

"ଚୁପ୍ କର, ନିଜ ଅନ୍ନଦାତା ବିରୁଦ୍ଧରେ ଏତେଗୁଡ଼ାଏ ମିଛ କଥା ମୁଁ ସହ୍ୟ କରି ପାରିବିନି..."

"ସତେ ? ଅନ୍ନଦାତା ? ପିଞ୍ଜରାବଦ୍ଧ କରି ଯେ ତୋର ସ୍ୱାଧୀନତାକୁ ଅପହରଣ କରିଛି ତାର ପାଇଁ ତୋ ଏତେ ମମତା ?"

"ବାଦଲ ମଧ୍ୟ ମୋତେ ପିଞ୍ଜରାରେ ରଖିଥିଲା..."

"ହଁ, ସତ କଥା, କିନ୍ତୁ ସେ ମୋତେ 'ମା'ର କୋଳରୁ ଛଡ଼ାଇ ଆଣି ନାହିଁ । ଏଇମିତି ଏକ ଝଡ଼ ରାତରେ ମାଡ଼ ମୋର ଭାଙ୍ଗି ଗଲା ।

Digitized by srujanika@gmail.com

ବୃକ୍ଷରେ ପିଟି ହୋଇ ପଡିଗଲି ଏକ କଣ୍ଟାବୁଦାରେ । ସର୍ବାଙ୍ଗ ମୋର
ବୃକ୍ଷରେ ପିଟି ହୋଇ ପଡିଗଲି ଏକ କଣ୍ଟା ବୁଦାରେ । ସର୍ବାଙ୍ଗ ମୋର
ରକ୍ତାକ୍ତ ହେଲା ··· ବହୁ କଷ୍ଟରେ ଜୀବନ ବଞ୍ଚାଇବା ପାଇଁ ନିକଟସ୍ଥ ବାଡଲର କୁଡ଼ିଆ ଭିତରକୁ ପଶିଗଲି । ପାହାନ୍ତିଆ ବେଳକୁ ବାଡଲର ସ୍ୱାମୀର ଦୃଷ୍ଟି ପଡ଼ିଲା ମୋ ଉପରେ । ସେ ମୋତେ ଧରି ପକାଇଲା ସତ, କିନ୍ତୁ ମୋତେ କ୍ଷତ ବିକ୍ଷତ ଦେଖି ନିଜ ହାତରେ ଔଷଧ ଲଗାଇ ଦେଲା··· ଆଉ ଆଦରରେ ସରୁ ଚୁମାଟିଏ ଦେଇ କହିଲା– "ଭୟ ନାହିଁ, ତୁ ମୋ ଘରେ କୁଆ ପରି ରହିବୁ ।" ସେହି ଦିନ ଠାରୁ ଠିକ୍ ନିଜ କୁଆ ପରି ସେମାନେ ସ୍ନେହ କରୁଥିଲେ । ଅନ୍ୟର ଆକ୍ରମଣରୁ ମୋତେ ରକ୍ଷା କରିବା ପାଇଁ ପିଞ୍ଜରାବଦ୍ଧ କରିଥିଲେ କିନ୍ତୁ ତୋତେ କାହିଁକି ପିଞ୍ଜରାବଦ୍ଧ କରାଯାଇଛି ଜାଣୁ ? ଯେତେବେଳେ ତୋର ଏହି ରୁଗ୍ଣ ଦେହ ମାଂସଳ ହୋଇ ଉଠିବ ସେତେବେଳେ ଏଇ କଣ୍ଟ୍ରାକ୍ଟର, ତୋର ଅନ୍ନଦାତା କଣ୍ଟ୍ରାକ୍ଟର, ତୋତେ ମାରିବା ପାଇଁ ତାର ବବୁର୍ଚ୍ଚିକୁ ଦେବ ଆଦେଶ । ତା'ପରେ···

ପିଞ୍ଜରା ଭିତରେ ଥିବା କପୋତଟି ଆଉ ସହ୍ୟ କରି ପାରିଲା ନାହିଁ । ତେଣୁ ପଡ଼ ଖୁବ୍ ଜୋରରେ ଉପରେ ବସିଥିବା କପୋତକୁ ପିଞ୍ଜରା ଫାଙ୍କରେ ନିଜ ଚଞ୍ଚୁରେ ଆଘାତ କଲା । ବେଦନାରେ ଅସ୍ଥିର ହୋଇ କଥା ଶେଷ କରି ନ ପାରି ଉପରେ ବସିଥିବା କପୋତଟି ଉଡ଼ି ଯାଉଥିବା ବେଳେ ନିକଟସ୍ଥ ଇଲେକ୍ଟ୍ରିକ ତାର ଗୁଡ଼ିକରେ ବାଜି ସେଠାରେ ଅଟକି ଗଲା । ପିଆଜେ ପିଞ୍ଜରା ଭିତରେ ଥିବା କପୋତଟି ବାରମ୍ବାର ଚମକି ଉଠୁଥିଲା ମାନସ୍ପଟ୍ଟରେ ତାର ଭାସି ଉଠୁଥିଲା ମିଃ ସିହ୍ନାଙ୍କ ବବୁର୍ଚ୍ଚିଙ୍କ ଛୁରା ବିଦ୍ୟୁତାଲୋକରେ ସତେ ଯେପରି ତାହା ଚକ୍ ଚକ୍ କରି ଉଠୁଥିଲା । ଆଉ କାନରେ ବାରମ୍ବାର ବାଜୁଥିଲା ସମଗୋତ୍ରୀର ଶେଷ କଥା ପଦକ – "ତାପରେ··· ତାପରେ···

Digitized by srujanika@gmail.com

# ଶରବ୍ୟ

ଧଉଳର ଅଦୂରସ୍ଥ ରକ୍ତାକ୍ତ ପ୍ରାଙ୍ଗଣରେ ମୁମୂର୍ଷୁ ସୈନିକମାନଙ୍କର ବୁକୁଫଟା ଆର୍ତ୍ତନାଦ···ଦୂର ନୀଳ ଆକାଶରେ ଦେବବାଳାର ନୈଶ ପ୍ରଦୀପ ମ୍ଳାନ ହୋଇ ଆସୁଥିଲା । ବେଦନା-ପୀଡ଼ିତ ଧରଣୀ ଉପରେ ତମସାର ଦାନବୀମାୟା ବିସ୍ତାରିତ ହୋଇ ପଡ଼ୁଛି···

ମଶାଣି ପଦାରେ ପ୍ରେତର ଆଲୋକ ପରି ଗୋଟିଏ କ୍ଷୀଣ ମଶାଲ ଧୀରେ ଧୀରେ ରଣକ୍ଷେତ୍ର ଆଡ଼କୁ ଅଗ୍ରସର ହେଉଥିଲା । ଆହତ ଓ ନିହତ ସୈନିକମାନଙ୍କର ରକ୍ତାକ୍ତ ସ୍ତୂପରେ ଅବାଧରେ ବିଚରଣ କରି ବୁଲୁଥିଲେ ରକ୍ତମୁଖୀ ଶୃଗାଳ ଦଳ । ମଶାଲର ଆଲୋକ ଦେଖି ଶ୍ୱାପଦ ପଛକୁ ଘୁଞ୍ଚି ଯାଇ ବିରକ୍ତିରେ ପାଟି କରି ଉଠିଲେ ସତେ ଯେପରି ।

ମଶାଲ ଆଗେଇ ଆସୁଥିଲା···

ଗୈରିକ ଆଲୋକରେ ଦୁଇଟି ନିଷ୍ପଲକ ଚକ୍ଷୁ ସ୍ପଷ୍ଟ ପ୍ରସ୍ଫୁଟିତ ହୋଇ ଆସିଲା । ପ୍ରଶସ୍ତ ଲଲାଟରୁ ଓଠ ପର୍ଯ୍ୟନ୍ତ ଗଭୀର ବେଦନାର ନିର୍ଯ୍ୟାସ ବିନ୍ଦୁ ବିନ୍ଦୁ ହୋଇ ଫୁଟି ଉଠିଛି । ଅଲଗା ବାଳରୁ କେତୋଟି ଲୋଟି ପଡ଼ୁଥିଲା ଲଲାଟ ଉପରେ ଅତି ଉଚ୍ଛୃଙ୍ଖଳ ଭାବରେ ହଠାତ୍ ଲପନଟି ଥରି ଉଠିଲା ।

ମଶାଲର ଗତି ସ୍ଥିର ହୋଇଗଲା । ମଶାଲଧାରୀ ଈଷତ୍ ତଳକୁ ଝୁଙ୍କି ପଡ଼ିଲେ । ଗୈରିକ ଆଲୋକରେ ତାଙ୍କ ଡାହାଣ ହାତର ସୁବର୍ଣ୍ଣ କଙ୍କଣ ଚକ୍ ଚକ୍ ହୋଇ ଉଠିଲା ।

Digitized by srujanika@gmail.com

"କଳିଙ୍ଗ ସେନାପତି !!!"

ଆଗନ୍ତୁକର ସମ୍ବୋଧନକୁ ଉପହାସ କରି ଉଠିଲେ ନିକଟରେ ବିଚରଣ କରି ବୁଲୁଥିବା ଶୃଗାଳ ଦଳ । ଆଗନ୍ତୁକର ସେଥିପ୍ରତି ଆଦୌ ଦୃଷ୍ଟି ନ ଥିଲା । ସେହି ଉପହାସ ସଙ୍ଗେ ଯେପରି କର୍ଣ୍ଣ କୁହ-ରରେ ପ୍ରତିଧ୍ୱନି ତୋଳିବାକୁ ଯାଇ ନିରାଶ ହୋଇ ପଡୁଥିଲା । ତଳକୁ ଝୁଙ୍କି ପଡ଼ି ବାଷ୍ପାର୍ଦ୍ର କଣ୍ଠରେ କହିଲେ ସେ—

"ତୁମେ ପାଣି ମାଗିଥିଲ ଟିକିଏ ଦେଖ ସୁବର୍ଣ୍ଣ ଝରିରେ ତୁମ··· ପାଇଁ ପାଣି ନେଇ ଆସିଛି, ଉଠ ···"

ଅନତିଦୂରସ୍ଥ ଦୁଇଟି ଅସ୍ପଷ୍ଟ ଛାୟାମୂର୍ତ୍ତି ସେତେବେଳକୁ ନିକଟକୁ ଚାଲି ଆସିଲେଣି । କିନ୍ତୁ ମଶାଲଧାରୀ ତାହା ଜାଣି ପାରି ନାହାନ୍ତି । କେତେକ ଆଲୁଅ ଭୂଲୁଣ୍ଠିତ ଗୋଟିଏ ପାଣ୍ଡୁ ବଳିଷ୍ଠ ଶରୀର ଉପରେ ମୂର୍ଚ୍ଛିତ ହୋଇ ପଡ଼ିଛି । ଆଉ ତାରି ଆଡ଼କୁ ନିର୍ନିମେଷ ନୟନରେ ଚାହିଁ ରହିଥିଲା ମଶାଲଧାରୀ ।

"ସମ୍ରାଟ !!!"

ନୈଶ ସମୀରଣ ଭିତରେ ସେହି ଡାକ ଅତି ଅସହାୟ ଭାବରେ ଲୀନ ହୋଇଗଲା । ମଶାଲଧାରୀ ନିକଟରେ ଆଗନ୍ତୁକ ଦୁଇ-ଜଣକୁ ଦେଖି ରଣକ୍ଷେତ୍ରର ଚାରି ଦିଗରୁ ପାଟି କରି ଉଠିଲେ ଶୃଗାଳ ଦଳ ପୁଣି ଥରେ । ତାଙ୍କର ଅବାଞ୍ଛିତ ଉପସ୍ଥିତିକୁ ସେମାନେ ସତେ ଯେପରି ସହ୍ୟ କରି ପାରୁ ନ ଥିଲେ ।

"ବିଶ୍ୱାସ ହେଉନି ? ରଣକ୍ଷେତ୍ରରେ ମୋତେ ନିରସ୍ତ୍ର ଦେଖି ଅସ୍ତ୍ରାଘାତ କରି ନଥିଲ; ଆଜି ତୁମର ଶେଷ ମିନତି ଟିକକ ମୁଁ ରକ୍ଷା କରିବି ନାହିଁ ?"

"ଗର୍ବୋନ୍ମତ୍ତ କଳିଙ୍ଗ ସେନାପତି ଚରମ ଶାସ୍ତି ପାଇଛି ସମ୍ରାଟ । ସବୁଦିନ ପାଇଁ ଟଳି ପଡ଼ିଛି ସେ ।"

Digitized by srujanika@gmail.com

ଚମକି ଉଠିଲେ ମଶାଲଧାରୀ । ହାତରୁ ତାଙ୍କର ଖସି ପଡ଼ିଲା ମଶାଲ ଓ ସୁବର୍ଣ୍ଣଝାରୀ । ନିଜର ଦୋଦୁଲ୍ୟମାନ ଶରୀରକୁ ସମ୍ଭାଳି ନ ପାରି ପଡ଼ି ଯାଉ ଥିବାବେଳେ ତାଙ୍କୁ ଧରି ପକାଇଲେ ନିକଟସ୍ଥ ଦୁଇଜଣ ବ୍ୟକ୍ତି — ମଗଧର ପ୍ରଧାନ ମନ୍ତ୍ରୀ ଓ ପ୍ରଧାନ ସେନା-ନାୟକ ।

ମଗଧ ସମ୍ରାଟଙ୍କର ଯେତେବେଳେ ଚେତନା ଫେରିଆସେ ସେତେବେଳକୁ ଦୂର ନୀଳାକାଶରେ ତାରାର ଦୀପାଳୀ ଗୋଟି ଗୋଟି କରି ଲିଭି ଯାଉଥାଏ । ପୂର୍ବ ନଭରେ ଦୀପ୍ତ ପ୍ରଭାତ ତାରା ମଧ୍ୟ ବିଦାୟ ନେବାକୁ ଅଧୀର ହୋଇ ଉଠୁଥାଏ । ଶିବିର ଭିତରେ ଏକ ନରମ ଶଯ୍ୟାରେ ଶାୟିତ ଅଶୋକ ଥରେ ଟିକିଏ ଚାରିଆଡ଼େ ଆଖି ବୁଲାଇ ଆଣିଲେ । ଶଯ୍ୟା ନିକଟରେ ଉପବେଶନ କରିଥିଲେ ମଗଧର ମହାମନ୍ତ୍ରୀ ରାଧାଗୁପ୍ତ । ସମ୍ରାଟଙ୍କୁ ଆଖି ମେଲିବା ଦେଖି ତାଙ୍କ କୁଞ୍ଚିତ କପୋଳ ଉପରୁ ଚିନ୍ତାର କେତୋଟି ସୂକ୍ଷ୍ମ ରେଖା ଧୀରେ ଧୀରେ ଲୀନ ହୋଇଗଲା । ମୁଖ ମଣ୍ଡଳରେ ଆନନ୍ଦାତିଶଯ୍ୟର ସୁସ୍ପଷ୍ଟ ଇଙ୍ଗିତ ।

ମହାମନ୍ତ୍ରୀର ଅନୁରୋଧରେ ଶୋଇବା ପାଇଁ ଆଖି ବୁଜିଲେ ଅଶୋକ । କିନ୍ତୁ ଅନୁଚିନ୍ତନର ତୀବ୍ର ଦହନ ଭିତରେ ତନ୍ଦ୍ରାର ସ୍ପର୍ଶ ମଧ୍ୟ ଦୁର୍ଲ୍ଲଭ ହୋଇ ପଡ଼ିଥିଲା । ସୀମିତ ପରିବେଷ୍ଟନୀ ଭିତରୁ ମନ ପକ୍ଷୀ ଦୂରକୁ, ବହୁ ଦୂରକୁ ଉଡ଼ି ଯାଉଥିଲା । ବସ୍ତୁତଃର ଯବନିକା ଅପସରି ଯାଉଥିଲା ଧୀରେ, ଅତି ଧୀରେ ।

ନିଜର ତରବାରୀ ଉପରେ ଅଶୋକଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ବିନ୍ଦୁସାରଙ୍କ ମୃତ୍ୟୁ ପରେ ଏହି ତରବାରୀହିଁ ତାଙ୍କୁ ମଗଧର ସିଂହାସନ ଉପହାର ଦେଇଛି । ଅକମ୍ପିତ ହସ୍ତରେ ଅକାତରରେ ଏହି ତରବାରୀକୁ ଟେକି ଧରି ସୁସୀମର କଲିଜା-ରକ୍ତରେ ରଞ୍ଜିତ କରିଥିଲେ । ସୁସୀମଙ୍କ ବିକଳ ଆର୍ତ୍ତନାଦ ତାଙ୍କର ବିକଟ ଅଟ୍ଟହାସ ଭିତରେ ଥରି

Digitized by srujanika@gmail.com

ଥିବ ଲୁଚି ଯାଇଥିଲା, ଅତି କରୁଣ ସ୍ୱରରେ । ସେ ଦିନର ଷଡ଼ଯନ୍ତ୍ରରେ ସହାୟକ ରାଧାଗୁପ୍ତ ଆଜି ମଗଧର ମହାମାନ୍ୟ ପ୍ରଧାନ ଅମାତ୍ୟ । ସିଂହାସନ ଆରୋହଣ ପରେ, ଅଶୋକ ଅତ୍ୟନ୍ତ ଶକ୍ତ ଓ ଭୟଙ୍କର ହୋଇ ଉଠିଲେ । ସାମ୍ରାଜ୍ୟ ବିସ୍ତାରର ଅଦମ୍ୟ ପିପାସା ତାଙ୍କୁ ରକ୍ତଲୋଲୁପ କରି ତୋଳିଲା.. କେତେ ପୁଲକିତ ସବୁଜ ପ୍ରାନ୍ତର ମଣିଷର ତାଜା ରକ୍ତରେ ବିଭତ୍ସ ହୋଇ ଉଠିଲା ।

ତାପରେ ଅଶୋକଙ୍କ ଆଖି ଆଗରେ ଭାସି ଉଠିଲା ସମୃଦ୍ଧ ଉତ୍କଳର ଛବି । ଉତ୍ତରରେ ସ୍ୱଚ୍ଛ ଶୀତଳା ସ୍ରୋତବହୁଳା ବୈତରଣୀ, ପଶ୍ଚିମରେ ଅମରକଣ୍ଟକ ପର୍ବତ ମାଳା, ଦକ୍ଷିଣରେ ମହେନ୍ଦ୍ର ଗିରିର ଗୁରୁ ଗାମ୍ଭୀର୍ଯ୍ୟ । ସାମ୍ରାଜ୍ୟଲୋଲୁପ ଅଶୋକ ଆଉ ସ୍ଥିର ହୋଇ ରହି ପାରିଲେନି । ଏକ ନଅର ନିଶୀଥର କଜଳ କଳା ବୁକୁ ଚିରି ଦୟା ନଦୀର କୂଳେ କୂଳେ ଅସଂଖ୍ୟ ମଶାଲ—ଜଳି ଉଠିଲା । ଦୟାର ତରଙ୍ଗାୟିତ ବୁକୁରେ ତାହାର ପ୍ରତିଛବି ତୋଳିଥିଲା ଅବ୍ୟକ୍ତ ଖିନ୍ତର କମ୍ପନ । ପୂର୍ବ ନଭ ରକ୍ତିମ ହୋଇ ଉଠିବା ସଙ୍ଗେ ସଙ୍ଗେ ମଗଧର ଅଗଣିତ ସୈନ୍ୟର ଉଚ୍ଛ୍ୱସିତ ନାଦରେ ଜନେ ଭୁବନେ ଅତଙ୍କିତ ହୋଇ ଉଠିଲା……

ଶିବିର ଭିତରେ କୋମଳ ଶାୟିତ ଶଯ୍ୟାରେ ଦିଗ୍‌ବିଜୟୀ ସମ୍ରାଟ ଅଶୋକ ମାନସଚକ୍ଷୁରେ ଦେଖି ଯାଉଥିଲେ ନିଜର ସୃଷ୍ଟ ରକ୍ତାକ୍ତ ଇତିହାସର ବନ୍ଧନହୀନ ପର୍ଯ୍ୟାୟ । କଳିଙ୍ଗ ଯୁଦ୍ଧର ଭୟାନକ, ଲୋମ ହର୍ଷଣକାରୀ ଛବି ତାଙ୍କ ଆଖି ଆଗରେ ସ୍ପଷ୍ଟ ହୋଇ ଉଠିବା ସଙ୍ଗେ ସଙ୍ଗେ ଅସ୍ପଷ୍ଟ ଚିତ୍କାର କରି ଉଠିଲେ ସେ…

ରାଧାଗୁପ୍ତଙ୍କ ତନ୍ଦ୍ରାଳୁଚକ୍ଷୁ ବିସ୍ଫାରିତ ହୋଇ ଉଠିଲା…

"ସମ୍ରାଟ ! ! !"

Digitized by srujanika@gmail.com

ଅଶୋକ ନିରୁତ୍ତର । କେବଳ ଥରଟିଏ ତାଙ୍କ କରୁଣ ଚାହାଣୀ ଶଙ୍କିତ ରାଧାଗୁପ୍ତର ମୁଖ ଉପରୁ ବୁଲି ଆସିଲା । ସତେ ପୃଥିବୀରେ ସେ ଏକଳତ ହୋଇ ଯାଉଛନ୍ତି । ସ୍ୱର୍ଣ୍ଣ ପ୍ରଦୀପର ଦୀପ୍ତ ଶିଖା ଆଡ଼କୁ ଚାହିଁ ଟିକଏ ପରେ କହିଲେ ସେ —

"ମହାମନ୍ତ୍ରୀ !!"

"ଆଦେଶ କରନ୍ତୁ ସମ୍ରାଟ !"

"କିଛି ଶୁଣି ପାରୁଛ ?"

"ନା'ତ..."

"ଶୁଣି ପାରୁନ ?" ଅଶୋକଙ୍କର ଦୀର୍ଘ ଭ୍ରୂ ଦୁଇଟି କୁଞ୍ଚିତ ହୋଇଗଲା । ଦେଖିଲେ ମନେ ହେଉଥିଲା ସତେ ଯେପରି ମନଯୋଗ ସହକାରେ ସେ କେତେ କ'ଣ ଶୁଣୁଛନ୍ତି । ରାଧାଗୁପ୍ତଙ୍କ ମୁଖମଣ୍ଡଳରେ ଖେଳି ବୁଲୁଥିଲା ଗଭୀର ଚିନ୍ତନର ଘନ ଛାୟା । ଅବୋଧ ଚାହାଣୀରେ ଚାହିଁ ରହିଥିଲେ ସେ ଅଶୋକଙ୍କ ବିସ୍ମୟ ବିସ୍ଫାରିତ ଲୋଚନକୁ ।

"ଏହି ଶୁଣ, ଏହି ଶୁଣ ମନ୍ତ୍ରୀ, ଭୂଲୁଣ୍ଠିତ ଆହତ ସୈନିକର ବିକଳ ଆର୍ତ୍ତନାଦ । ଆଜି ଏହି ଶୁଣ ନର ରକ୍ତରେ ତାହାର ପବିତ୍ର ସଲିଳ ଅପବିତ୍ର ହେବା ଦେଖି ଦୟାନଦୀ "ଦୟା ମଧ୍ୟ ଅଭିସମ୍ପାତ କରୁଛି ।" ଉନ୍ମାଦ ପରି ବିଛଣାରୁ ଉଠିପଡ଼ିଲେ ଅଶୋକ ରାଧାଗୁପ୍ତ ଆତଙ୍କିତ ହୋଇ ଉଠିଲେ ।

"କଳିଙ୍ଗ ବିଜୟ ପାଇଁ ବହୁରାତି ବିନିଦ୍ର କଟି ଯାଇଛି ସମ୍ରାଟ ! ଏ ଆପଣଙ୍କ ଅବସାଦଗ୍ରସ୍ତ ମନର ବିକାର । ବିଶ୍ରାମ ଆପଣଙ୍କର ଏକାନ୍ତ କାମ୍ୟ ।" ରାଧାଗୁପ୍ତଙ୍କ କଥାର ଗୋଟିଏ ସୁଦ୍ଧା ପଦ ସତେ ଯେପରି ଅଶୋକଙ୍କର କର୍ଣ୍ଣରେ ପ୍ରବେଶ କଲା ନାହିଁ । ଧୀରେ ଧୀରେ ଆଗେଇ ଗଲେ ସେ । ସମ୍ମୁଖରେ ନିଜ କଳ୍ପିତ ସାମ୍ରାଜ୍ୟର ମାନଚିତ୍ର । କିଛିକ୍ଷଣ ପାଇଁ ସେହି ଆଡ଼କୁ ଅନିମେଷ

Digitized by srujanika@gmail.com

ନୟନରେ ଚାହିଁ ରହିଲେ ଅଶୋକ । ତା'ପରେ ଦୁଇ ହାତରେ ମାନଚିତ୍ରଟିକୁ ଟୁକୁରା ଟୁକୁରା କରି ଚିରି ଝଞ୍ଜା ପରି ଶିବିରରୁ ନିଷ୍କ୍ରାନ୍ତ ହେଲେ ସେ । ରାଧାଗୁପ୍ତଙ୍କ ତାମ୍ର ବର୍ଣ୍ଣର କପୋଳ କୁଞ୍ଚିତ ହୋଇ ଆସିଲା । ମନେ ମନେ ଭାବୁଥିଲେ ସେ-ଅତ୍ୟଧିକ ଉତ୍ତେଜନାରେ ସମ୍ରାଟ କଣ ପାଗଳ ହୋଇଗଲେ ? ଅସ୍ଥିର ପଦ କ୍ଷେପରେ ସମ୍ରାଟଙ୍କ ଅନୁଧାବନ କଲେ ରାଧାଗୁପ୍ତ ।

ସେତେବେଳକୁ ଗତାୟୁ ରଜନୀର ଅସ୍ତିତ୍ୱ ନକ୍ଷତ୍ରବାଳାର ଚୌପାରିରେ ଲୁପ୍ତ ହୋଇ ଆସୁଥିଲା, ଧ୍ୟାନମଗ୍ନ ଧଉଳ ସୁଦୃଶ୍ୟ ହୋଇ ଆସୁଥିଲା ଧୀରେ, ଅତି ଧୀରେ । ଦୟାର ତଟରେ ତଟରେ ଅଶୋକଙ୍କ ପଦକ୍ଷେପ ଚଞ୍ଚଳ ହୋଇ ଉଠିଥିଲା । ରଣକ୍ଷେତ୍ରର ମଝିରେ ପହଞ୍ଚି ପାଦ ଦୁଇଟି ତାଙ୍କର ହଠାତ୍ ସତେ ଯେପରି ପାଷାଣ ପାଲଟି ଗଲା । ଚତୁର୍ଦ୍ଦିଗରେ ନର ରକ୍ତ ଜମାଟ ବାନ୍ଧିଛି । ଖଣ୍ଡ ବିଖଣ୍ଡିତ ନର ଅବୟବର ସ୍ତୂପ ଉପରେ ପୁଲକ ଉଠୁଥିଲେ ଶକୁନ ପଲ । ବ୍ୟାକୁଳ ନୟନରେ ସ୍ୱୀୟ ନରମେଧ ଯଜ୍ଞର ବୀଭତ୍ସ ଦୃଶ୍ୟ ଦେଖି ଶିହରି ଉଠିଲେ ଅଶୋକ...କପାଳରେ ଫୁଟି ଉଠୁଥିଲା ବିନ୍ଦୁ ବିନ୍ଦୁ ଘର୍ମ ।

ଅଶୋକ ଚାହିଁ ରହିଲେ, ବ୍ୟାକୁଳ ନୟନରେ ଚାହିଁ ରହିଲେ । ସତେ ଯେପରି ପ୍ରଳୟର ତାଣ୍ଡବ ଶେଷରେ ନିଜର ଧ୍ୱଂସ ଲୀଳା ଦେଖି ସଂହାରକର୍ତ୍ତା ନିର୍ବେଚନ ଅନୁତାପ ଓ ଅନୁଶନ୍ତନର ତୀବ୍ର ଦହନ ସହ୍ୟ କରି ପାରୁ ନାହାନ୍ତି ।

ହଠାତ୍ ଦୟାର ଅଦୂରସ୍ଥ କୂଳରେ ଏକ ପ୍ରଶାନ୍ତ ସୌମ୍ୟ ମୂର୍ତ୍ତି ଅଶୋକଙ୍କର ଦୃଷ୍ଟି ଆକର୍ଷଣ କଲା । ଦୂରରୁ ଦେଖାଯାଉଥିଲା ସେଟି ଯେପରି ଏକ ହରିଦ୍ରା ବର୍ଣ୍ଣର ମଞ୍ଜୁଳ ଛବି । ଅଶୋକଙ୍କ ଚକ୍ଷୁ ସମକ୍ଷରୁ ଗାଢ଼ ତମସା ହଠାତ୍ ଅପସରି ଗଲା·· ଆଖି ଆଗରେ ଦେଖାଦେଲା ନୂତନ ଆଲୋକ ।

Digitized by srujanika@gmail.com

ଧାବମାନ ଚଣ୍ଡାଶୋକ ସୌମ୍ୟ ମୂର୍ତ୍ତିର ପଦତଳେ ଲୋଟି-ପଡ଼ି ମୂର୍ଚ୍ଛା ଗଲେ । ଚମକ ପଡ଼ିଲେ ଧ୍ୟାନମଗ୍ନ ଉପଗୁପ୍ତ, କନ୍ତୁ ଆଖି ମେଲିବା ସଙ୍ଗେ ସଙ୍ଗେ ଲପନରେ ତାଙ୍କର ଘଟିଉଠିଲା ଉଷାର ବିପୁଳ ଆଶା । ରକ୍ତଲୋଲୁପ ଚଣ୍ଡାଶୋକ ନିଜେ ନିଜର ଶରବ୍ୟ ହୋଇଛନ୍ତି···



Printed by Sri J. N. Kumar,
at The Quality Printers, Sambalpur.

Digitized by srujanika@gmail.com